# ଭାଷା ଭାବନା

## ବୈଷ୍ଣବ ଚରଣ ପରିଡ଼ା

ପ୍ରକାଶକ: ବୈଷ୍ଣବ ପରିଡ଼ା ସ୍ମୃତି ନ୍ୟାସ, ଭୁବନେଶ୍ୱର

ପ୍ରଚ୍ଛଦ: ସୌମିକ ପରିଡ଼ା
ପ୍ରଥମ ପ୍ରକାଶ: ୧୫ ଫେବୃଆରୀ ୨୦୨୧

---

**BHASA BHABANA**
**by Baishnab Charan Parida**

Published by **Baishnab Parida Memorial Trust**, Bhubaneswar

Cover : **Soumik Parida**
First Impression : 15th February 2021
Interior Design: Ezy's Publication
Printed at: Printtech Offset Pvt. Ltd., Bhubaneswar
Price: **100/-**

# ଭାଷା ଭାବନା

ଓଡ଼ିଆ ଆମର ମାତୃଭାଷା । ଅଢେଇ ହଜାର ବର୍ଷ ଧରି ଓଡ଼ିଆ ଭାଷା ଓଡ଼ିଆମାନଙ୍କ ଗର୍ବ, ଗୌରବ ଓ ଅସ୍ମିତାର କାରଣ ହୋଇ ରହିଛି । ଭାରତୀୟ ଭାଷାମାନଙ୍କର ଶାସ୍ତ୍ରୀୟତା ବିଚାର କଲାବେଳେ ଏପର୍ଯ୍ୟନ୍ତ ସଂସ୍କୃତ, ତାମିଲ୍, ତେଲୁଗୁ, କନ୍ନଡ ଓ ମାଲୟଲାମ୍ ସ୍ଥାନ ପାଇଥିଲେ । କିନ୍ତୁ ପାଞ୍ଚବର୍ଷ ପୂର୍ବେ ଓଡ଼ିଆ ଭାଷାକୁ ମଧ୍ୟ ଶାସ୍ତ୍ରୀୟ ମାନ୍ୟତା ଭାରତ ସରକାର ଦେଇଛନ୍ତି ଏବଂ ଏହା ୧୪.୪.୨୦୧୪ ଗେଜେଟ୍‌ରେ ପ୍ରକାଶ ପାଇଛି । ମରାଠୀ, ହିନ୍ଦୀ, ବଙ୍ଗଳା, ଗୁଜୁରାଟୀ ପ୍ରଭୃତି ଅନେକ ଭାଷା ଆମ ଦେଶରେ ପ୍ରଚଳିତ, ତଥାପି କେନ୍ଦ୍ର ସରକାରଙ୍କ ତାଲିକାରେ ମାତ୍ର ଛଅଟି ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଛନ୍ତି । ଦେଶ ଓ ବିଦେଶରୁ ଅନେକ ବିଜ୍ଞ ଓ ବିଖ୍ୟାତ ଐତିହାସିକ ଭାରତ ଭ୍ରମଣରେ ଆସନ୍ତି ପ୍ରାଚୀନ ଭାରତର ଭାଷା, ସଂସ୍କୃତି, ଧର୍ମ, କଳା ଓ ଭାସ୍କର୍ଯ୍ୟ ସମେତ ଜୀବନଯାପନ ପ୍ରଣାଳୀ ଅଧ୍ୟୟନ କରିବା ପାଇଁ । ଆମ ଓଡ଼ିଶାର ଜଣେ ପ୍ରତିଭାଶାଳୀ ଐତିହାସିକ ଶ୍ରୀ ଏ.ପି. ପଟ୍ଟନାୟକ ଲେଖିଥିବା ତିନିଟି ଇଂରାଜୀ ଗ୍ରନ୍ଥ, ଦୁଇଟି ଓଡ଼ିଆ ଗ୍ରନ୍ଥ, ଯାହା ଅତୀତର ଅନେକ ଅଜ୍ଞାନ ତଥ୍ୟକୁ ଜଣାଇ ଦେଇଛି । ସେହିପରି ଆମେରିକାର ଐତିହାସିକ ପ୍ରଫେସର ଡୋନାଲ୍ଡସନ୍‌ଙ୍କ ଦ୍ୱାରା ପ୍ରକାଶିତ ଚାରିଗୋଟି ବିରାଟ ଗ୍ରନ୍ଥରେ ଓଡ଼ିଶାର ଅତୀତର ଅଜଣା କଳା, ଇତିହାସ, ଧର୍ମ, ସ୍ଥାପତ୍ୟ, ସଂସ୍କୃତି ପ୍ରକାଶ ପାଇଛି, ଯାହା ଆମର ଅନନ୍ୟ ଅସ୍ମିତା ଓ ଗୌରବର ସାକ୍ଷୀ । ଏହା ସତ୍ୟ ଯେ, ଏପର୍ଯ୍ୟନ୍ତ ସଂପୂର୍ଣ୍ଣ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଲେଖା ଯାଇନାହିଁ ।

ଚାରିଖଣ୍ଡରେ ବିଭକ୍ତ ଇଂରାଜୀରେ ଲେଖା complete History & Culture of Odisha ଦିଲ୍ଲୀ କାବେରୀ ପ୍ରକାଶନ ପ୍ରକାଶ କରିଛନ୍ତି ଆମ ଉଦ୍ୟମରୁ । କିନ୍ତୁ ଅନେକ ତଥ୍ୟ, କଳା ଓ ସ୍ଥାପତ୍ୟ ଏପର୍ଯ୍ୟନ୍ତ ଇତିହାସରେ ଲିପିବଦ୍ଧ ହୋଇନାହିଁ ।

ଜଣେ ଓଡ଼ିଆ ପୁଅ ବୈଷ୍ଣବ ଚରଣ ପରିଡ଼ା ଅଧ୍ୟୟନ ଶେଷ କରି ବିଦେଶ ଯାଇଥିଲେ ଋଷ ଦେଶର ସାହିତ୍ୟ, ଅର୍ଥନୀତି, ଇତିହାସ, ଧର୍ମ ଓ ସଂସ୍କୃତି ସମ୍ବନ୍ଧରେ ଜୀବନ୍ତ ତଥ୍ୟ ସଂଗ୍ରହ କରିବା ପାଇଁ । ବିଦେଶରେ ପନ୍ଦର ବର୍ଷ ରହିବା ପରେ ସେ ଫେରିଲେ ମାତୃଭୂମି ଓଡ଼ିଶାକୁ । ଓଡ଼ିଶାର ଅବସ୍ଥା ଅଧ୍ୟୟନ କରିବା ପରେ ରାଜନୀତିରେ ପ୍ରବେଶ କଲେ ଏବଂ ସମୟ କ୍ରମେ ରାଜ୍ୟସଭାର ସଭ୍ୟ ହେଲେ ଛଅ ବର୍ଷ ପାଇଁ । ଏଇ ପଦବୀର ସଦ୍ ବ୍ୟବହାର କରିବା ପାଇଁ ସେ ମନସ୍ଥ କରିଥିଲେ । କାରଣ ଦୀର୍ଘକାଳ ଓଡ଼ିଶା ବିଷୟରେ ସେ ଅନେକ ତଥ୍ୟ ସଂଗ୍ରହ କରିଥିଲେ । ଓଡ଼ିଶା କହିଲେ ଏପରି ଏକ ରାଜ୍ୟକୁ ବୁଝାଏ ଯାହାର ଭାଷା, ସଂସ୍କୃତି, ଧର୍ମ, ଇତିହାସ, କଳା, ଭାସ୍କର୍ଯ୍ୟ ଭାରତ ବିଖ୍ୟାତ। ଏହିସବୁ ତଥ୍ୟ ସଂଗ୍ରହ କରିବା ଓ ଓଡ଼ିଆ ଭାଷା, କଳା ସ୍ଥାପତ୍ୟକୁ ଜାଣିବା ସହିତ କବିମାନଙ୍କର ମହିମା ଓ ଗରିମା ଦେଶବାସୀଙ୍କୁ ଜଣାଇବା ପାଇଁ ପଦକ୍ଷେପ ନିଆଗଲା । ଓଡ଼ିଶାର ହୀନମନ୍ୟତା ଦେଖି ବୈଷ୍ଣବ ବାବୁ କେବଳ ଚମକି ପଡ଼ି ନ ଥିଲେ, ଓଡ଼ିଆ ଭାଷା, କଳା, ସ୍ଥାପତ୍ୟ, ସାହିତ୍ୟ, ସଂସ୍କୃତି ସ୍ତରରେ ସେ ଅନୁଭବ କଲେ ଯେ ବିଦେଶୀମାନେ ନୁହଁନ୍ତି, ଓଡ଼ିଶାବାସୀଙ୍କର ହୀନମନ୍ୟତା ହିଁ ଓଡ଼ିଶାର ଗର୍ବକୁ ଖର୍ବ କରିଛି ।

୧୫୬୫ରେ ସ୍ୱତନ୍ତ୍ର କଳିଙ୍ଗର ପତନ ହେଲା । ଦକ୍ଷିଣ ଖଣ୍ଡ ଆନ୍ଧ୍ର, କନ୍ନଡ ଓ ତାମିଲ୍‌ନାଡୁ, ମଧ୍ୟପ୍ରଦେଶର ଅଂଶ ଛତିଶଗଡ଼ ଅଞ୍ଚଳ ଓ ବିହାରର ସିଂହଭୂମି ଅଞ୍ଚଳ ଏବଂ ପଶ୍ଚିମବଙ୍ଗର ମେଦିନୀପୁର, ବୀରଭୂମି ଅଞ୍ଚଳ ଏପର୍ଯ୍ୟନ୍ତ ଓଡ଼ିଶା ବାହାରେ । ସେସବୁ ଅଞ୍ଚଳ ଓଡ଼ିଶାକୁ ଫେରିବାର କୌଣସି ଆଶା ନାହିଁ । ଓଡ଼ିଶାର ଦାବି କହିବା ପାଇଁ ଫକୀରମୋହନ, ମଧୁବାବୁ, ଗୋପବନ୍ଧୁ, ଗଙ୍ଗାଧର ମେହେର ଏବଂ ଉତ୍ତର ଓଡ଼ିଶା, ଦକ୍ଷିଣ ଓଡ଼ିଶାର ବୀରମାନେ ନାହାଁନ୍ତି । କିନ୍ତୁ ଦୀର୍ଘକାଳ ଓଡ଼ିଶା ଅବହେଳିତ ରହିବା ପରେ ଓଡ଼ିଶା ରହିଛି ପୂର୍ବପରି । କେନ୍ଦ୍ରରୁ ଓଡ଼ିଶାକୁ ନ୍ୟାୟ ସବୁବେଳେ ମିଳେନାହିଁ । ଏପରିକି ଓଡ଼ିଶା ସରକାର ଓ ବିଶ୍ୱବିଦ୍ୟାଳୟ ଏବଂ ନେତାମାନେ ଭାଷାର ମାନ୍ୟତା, ସଂସ୍କୃତିର ଉତ୍‌ଥାନ, ଧର୍ମର ଗୌରବ ଫେରାଇ ଆଣିବା ପାଇଁ କିଛି ବିଶେଷ କାର୍ଯ୍ୟ କରିନାହାଁନ୍ତି । କିନ୍ତୁ ଋଷିଆରୁ ଫେରିବା ପରେ ବୈଷ୍ଣବ ଚରଣ ପରିଡ଼ା ମନଧ୍ୟାନ ସବୁ ଅଜାଡ଼ି ଦେଲେ ଲେଖକ, ଭାବୁକ, ନେତା ଓ ଭାଷାବିତ୍‌ମାନଙ୍କୁ ସଂଗଠିତ କରିବା ପାଇଁ ତଥା ଓଡ଼ିଶାର ପୂର୍ବ ଗୌରବ ଓ ଅଭିମାନ ଫେରାଇ ଆଣିବା

ପାଇଁ । ସହର, ଗ୍ରାମ, ବଜାର, ସଂସ୍ଥା ଓ ଶିକ୍ଷାନୁଷ୍ଠାନ ସର୍ବତ୍ର ଓଡ଼ିଶାର ଗୌରବ ଓ ଅଭିମାନକୁ ଫେରାଇ ଆଣିବା ପାଇଁ । ଓଡ଼ିଆ ଭାଷାର ବୈଶିଷ୍ଟ୍ୟ, ଓଡ଼ିଶାର ସଂସ୍କୃତି, ଧର୍ମ ଧାରଣା, ଭାଷା, ସ୍ଥାପତ୍ୟ ଓ କଳାର ହଜିଲା ଗୌରବ ଫେରାଇ ଆଣିବା ପାଇଁ ସାରା ଓଡ଼ିଶା ଘୂରିଲେ । ତାଙ୍କର ବକ୍ତବ୍ୟ ଖବରକାଗଜ, ସଭାସମିତି ଓ ସହର ବଜାର ସର୍ବତ୍ର ପ୍ରସାରିତ ହେଲା । ଘରେଘରେ ପରିଚିତ ହେଲେ ବୈଷ୍ଣବ ପରିଡ଼ା । ରାଜ୍ୟ ସରକାର ଓ ବିଭିନ୍ନ ସଂସ୍ଥା ସହିତ ସଂଯୋଗ ସ୍ଥାପନ କଲେ, କିନ୍ତୁ ସବୁ ନିଷ୍ପତ୍ତି କାଗଜ କଲମରେ ରହିଗଲା । ବଡ଼ ବଡ଼ ସୌଧ, ମନ୍ଦିରମାଳିନୀ ଓଡ଼ିଶାର ଗୌରବ ଅଜଣା ରହିଗଲା ଏବଂ ଓଡ଼ିଆ ଭାଷା ସଚିବାଳୟ, ଦୋକାନ ବଜାର ଓ ଶିକ୍ଷାନୁଷ୍ଠାନ ପ୍ରଭୃତିରେ ଓଡ଼ିଆ ଲିପି ବ୍ୟବହାର କରାଗଲା ନାହିଁ । ବିଧାନସଭା ଓ ଗୃହ କାର୍ଯ୍ୟ ସର୍ବତ୍ର ଓଡ଼ିଆ ଭାଷା ବ୍ୟବହାର କରାଗଲା ନାହିଁ । ଦିନରାତି ଚବିଶ ଘଣ୍ଟା ଓଡ଼ିଶାର ଗାଁ ଗଣ୍ଡା, ସହର ବଜାର ବୁଲିବୁଲି ସେ ନୈରାଶ୍ୟରେ ଭାଙ୍ଗିପଡ଼ିଲେ । ମାତୃଭୂମି ଓଡ଼ିଶାର ନାମ ସ୍ମରଣ କରିକରି ସେ ଆଖି ବୁଜିଲେ । ତାଙ୍କ ତୁଣ୍ଡରୁ ଶେଷ ବେଳକୁ ଶୁଣାଯାଉଥିଲା ଜୟ ଓଡ଼ିଆ... ଜୟ ଓଡ଼ିଆ... ।

ତାଙ୍କ ସହିତ ଆମ ପରିବାରର ଦୀର୍ଘ ବନ୍ଧୁତା ଯେ ମନରୁ ଲିଭିବ ନାହିଁ, ଏହା ନିଶ୍ଚିତ । ଓଡ଼ିଶାର ବରିଷ୍ଠ ଓ ଯଶସ୍ୱୀ ଲେଖକ, ବିଜ୍ଞ ଓ କଳାକାର ତାଙ୍କୁ କେବେ ଭୁଲିବେ ନାହିଁ ବା ସେମାନେ ପାଶୋରି ଯିବେନାହିଁ । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତିର ସୁରକ୍ଷା ସମସ୍ତଙ୍କ କର୍ତ୍ତବ୍ୟ । ବୈଷ୍ଣବବାବୁଙ୍କ ଲକ୍ଷ୍ୟ ଓ ଆଦର୍ଶ ଭାଷାପ୍ରେମୀ ସମସ୍ତଙ୍କର ଲକ୍ଷ୍ୟ ଓ ଆଦର୍ଶ ।

**ସାତକଡ଼ି ହୋତା**

ପ୍ରାକ୍ତନ ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ

# କେଇପଦ...

ଚାହୁଁ ଚାହୁଁ ଦୁଇବର୍ଷ ବିତିଗଲା। ଘରର ପ୍ରତିଟି ସ୍ଥାନରେ, କୋଣ ଅନୁକୋଣରେ ତୁମର ଉପସ୍ଥିତିକୁ ମୁଁ ବେଶ୍ ଅନୁଭବ କରୁଛି। ଯେଉଁଠି ତୁମେ ବସୁଥିଲ, ପଢାପଢି କରୁଥିଲ, ଲେଖାଲେଖି କରୁଥିଲ ସେସବୁ ଜାଗାକୁ ଚାହିଁଦେଲେ ବେଶ୍ ମନେ ପଡ଼ିଯାଉଛ ତୁମେ !

ଛାତ୍ରାବସ୍ଥାରୁ ସମାଜସେବା, ସଂଗଠନ, ସାହିତ୍ୟ ଓ ରାଜନୀତି ପ୍ରତି ତୁମର ରୁଚି ଥିଲା। ବିଭିନ୍ନ ଗଠନମୂଳକ କାର୍ଯ୍ୟ କରିବାକୁ ସବୁବେଳେ ତତ୍ପର ଥିଲ। ଦଶମ ଶ୍ରେଣୀରେ ପଢ଼ିବା ବେଳେ ମଞ୍ଜୁରୀ ପାଇ ନ ଥିବା ନିଜ ହାଇସ୍କୁଲ୍‌ର ଅସଂପୂର୍ଣ୍ଣ କାର୍ଯ୍ୟକୁ ସଂପୂର୍ଣ୍ଣ କରିବା ପାଇଁ ଧର୍ମଘଟ କରିବା, ହାଇସ୍କୁଲ୍‌ର ଉନ୍ନତି ନିମନ୍ତେ ଗାଁ ଗାଁ ଘରଘର ବୁଲି ଚାନ୍ଦା ମାଗିବା ପାଇଁ ତୁମେ ପଛେଇ ନ ଥିଲ। ଏପରିକି ହାଇସ୍କୁଲ୍ ମଂଜୁରୀ ପାଇବା ପାଇଁ ଗୋଟିଏ ବର୍ଷ ଦଶମ ଶ୍ରେଣୀ ପରୀକ୍ଷା ମଧ୍ୟ ତୁମେ ବର୍ଜନ କରିଥିଲ।

ସେହିଭଳି କଲିକତାରେ ପଢ଼ିଲା ବେଳେ ପଶ୍ଚିମବଙ୍ଗ ଓଡ଼ିଆ ଛାତ୍ରସଂଘ, ଓଡ଼ିଆ ନାଗରିକ ସଭା ଗଠନକରି ପ୍ରବାସୀ ଓଡ଼ିଆମାନଙ୍କର ବିବିଧ ସମସ୍ୟା ସମାଧାନ ସହିତ ସେଠାରେ ଓଡ଼ିଆ ଭାଷା ସଂସ୍କୃତିର ବିକାଶ ପାଇଁ ଅକ୍ଲାନ୍ତ ଉଦ୍ୟମ କରିଥିଲ। ପୁଣି ପ୍ରବାସୀ ଓଡ଼ିଆ ପିଲାମାନଙ୍କ ପାଠ ପଢ଼ିବା ପାଇଁ ଖିଦିରପୁରରେ ଓଡ଼ିଆ ବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠା କରିଥିଲ।

କଲିକତାରୁ ଫେରି ଓଡ଼ିଶାରେ ମଧ୍ୟ ତୁମେ ବିଭିନ୍ନ

ସଂଗଠନାତ୍ମକ କାର୍ଯ୍ୟ ଆରମ୍ଭ କରିଦେଲ। ବିଭିନ୍ନ ସାମାଜିକ ସଂଗଠନ ଗଢ଼ି ବିଭିନ୍ନ ପ୍ରକାର ସଂସ୍କାରମୂଳକ କାର୍ଯ୍ୟକ୍ରମ କରିବାରେ ଲାଗିଲ। ବିଶେଷତଃ ନିରକ୍ଷରତା ଦୂରୀକରଣ ଅଭିଯାନରେ ତୁମର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଲା। ସେହି ସମୟରେ ପୂର୍ବତନ ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀଙ୍କ ସହ ମିଶି ଓଡ଼ିଶାରେ ଯେଉଁ କେତୋଟି ସମାବେଶ କରିଥିଲ ତାହାର ଏକ ସୁପ୍ରଭାବ ଦେଖିବାକୁ ମିଳିଥିଲା ପରବର୍ତ୍ତୀ ସମୟରେ। ତୁମ ଜୀବନର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ସୃଜନ ସାହିତ୍ୟ। ଉଭୟ ମୌଳିକ ଓ ଅନୁବାଦ ରଚନାରେ ତୁମେ ଥିଲ ସିଦ୍ଧହସ୍ତ। ମସ୍କୋ ରହଣି କାଳରେ ଓଡ଼ିଆ ଭାଷାର ପ୍ରଚାର ପ୍ରସାର ପାଇଁ ତୁମେ ଋଷ ଭାଷାରୁ ଓଡ଼ିଆ ଭାଷାକୁ ପ୍ରାୟ ଅଶୀରୁ ଊର୍ଦ୍ଧ୍ୱ ପୁସ୍ତକ ଅନୁବାଦ କରିଥିଲେ। କେବଳ ସେତିକି ନୁହେଁ, ସୋଭିଏତ୍ ଭାଷାବିତ୍ ପ୍ରଫେସର କାରୁଷିନ୍‌ଙ୍କ ସହିତ ମିଶି ଅଠେଇଶ ଜଣ ଓଡ଼ିଆ ଲେଖକଙ୍କର ଗଳ୍ପକୁ ନେଇ ଏକ 'ଗଳ୍ପମାଳା' ସମେତ କାଳଜୟୀ ଓଡ଼ିଆ ଉପନ୍ୟାସ 'ମାଟିର ମଣିଷ'କୁ ଋଷ ଭାଷାରେ ଅନୁବାଦ କରିଥିଲ। ମସ୍କୋରେ ଆମେ ରହୁଥିବା ଘରେ ପ୍ରବଳ ଶୀତରେ କଫି ଓ ପକୁଡ଼ି ଖାଇ ସନ୍ଧ୍ୟା ପରେ ସନ୍ଧ୍ୟା ଅସୀମ ଧୈର୍ଯ୍ୟର ସହ ବସି ଏହି ଅନୁବାଦ କାର୍ଯ୍ୟକୁ ସଫଳ କରିବା ପାଇଁ ଯେଉଁ ଅକ୍ଳାନ୍ତ ପରିଶ୍ରମ କରିଥିଲ ତାହା ମୁଁ ଅତି ନିକଟରୁ ଦେଖୁଥିଲି ଓ ତୁମ ପାଇଁ ଗର୍ବ ଅନୁଭବ କରୁଥିଲି।

ମାତୃଭୂମି ଓ ମାତୃଭାଷା ପ୍ରତି ତୁମର ଦୁର୍ବଳତା ଓ ଭଲପାଇବା ପିଲାଟି ଦିନରୁ। ଏହା ତୁମର ପ୍ରତିଟି କାର୍ଯ୍ୟରେ ମଧ୍ୟ ପ୍ରତିଫଳିତ ହେଉଥିଲା। ମସ୍କୋର ସମସ୍ତ ପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ଆରାମଦାୟକ ଜୀବନ ତ୍ୟାଗକରି କେବଳ ନିଜ ଦେଶ ମାତୃକାର ସେବା ପାଇଁ ଶେଷରେ ତୁମେ ଫେରିଆସିଲ ଓଡ଼ିଶା। ମସ୍କୋରେ ଆଉ ମାତ୍ର କିଛି ବର୍ଷ ରହିଯାଇଥିଲେ ପେନ୍‌ସନ୍ ସହିତ ମିଳିଥିବା ଘରଟିର ତୁମେ ଅଧିକାରୀ ହେଇପାରିଥାନ୍ତ। କିନ୍ତୁ ଏସବୁ ସୁଯୋଗ ଛାଡ଼ି ତୁମେ ଚାଲିଆସିଲ ଓଡ଼ିଶା। ଏଠିକୁ ଫେରି ପୁଣି ଆରମ୍ଭ କରିଦେଲ ସାମାଜିକ କାର୍ଯ୍ୟ। ସମାଜର ବିବିଧ କ୍ଷେତ୍ରରେ ପରିବର୍ତ୍ତନ ଆଣିବା ପାଇଁ ବିଶେଷତଃ ଅନ୍ୟାୟ ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ଲଢେଇ କରିବା ପାଇଁ ତୁମେ ଅଣ୍ଟା ଭିଡ଼ିଲ। ସେଥିପାଇଁ ସାହିତ୍ୟିକ ଓ ବୁଦ୍ଧିଜୀବୀଙ୍କୁ ସାଙ୍ଗରେ ନେଇ ଗଠନ କଲ 'ନବ ଚିନ୍ତନ ମଞ୍ଚ'। ଏହା ମାଧ୍ୟମରେ ବିଭିନ୍ନ ସାମାଜିକ ପରିବର୍ତ୍ତନ ଆଣିବା ପାଇଁ ତଥା ଜନସଚେତନତା ପାଇଁ ବିଭିନ୍ନ ସାମାଜିକ ବିଷୟବସ୍ତୁ ବା ପ୍ରସଙ୍ଗକୁ ନେଇ ଆଲୋଚନା ସଭା ଓ ସମାବେଶରେ ତୁମେ ନିଜକୁ ଉତ୍ସର୍ଗ କଲ।

ଓଡ଼ିଆ ଭାଷାର ସୁରକ୍ଷା ନିମନ୍ତେ ତୁମେ ନିରନ୍ତର ନିଷ୍ଠାପର ଉଦ୍ୟମ ଓ କାର୍ଯ୍ୟ

ଜାରି ରଖିଥିଲ। ଓଡ଼ିଆରେ ଦୋକାନ ବଜାରର ନାମଫଳକ ଲେଖିବା ନେଇ ସଚେତନତା ଅଭିଯାନ ଆରମ୍ଭ କଲ। ପୁଣି ଭାଷା ସୁରକ୍ଷା ସମ୍ମିଳନୀ ଗଠନ କରି ଏ ଦିଗରେ ବିବିଧ କାର୍ଯ୍ୟକ୍ରମ ହାତକୁ ନେଲ। ଜୀବନର ଶେଷ ପର୍ଯ୍ୟନ୍ତ ଓଡ଼ିଆ ଭାଷାର ଉନ୍ନତି, ପ୍ରଚାର, ପ୍ରସାର ଓ ସୁରକ୍ଷା ନିମନ୍ତେ ତୁମେ ଉଦ୍ୟମ ଜାରି ରଖିଥିଲ।

ପ୍ରକୃତରେ ତୁମେ ଥିଲ ଜଣେ କର୍ମଯୋଗୀ। କର୍ମ ହିଁ ଥିଲା ତୁମ ପାଇଁ ସବୁକିଛି। ତୁମ ଜୀବନ ଥିଲା ସାଧନାମୟ, କୌଣସି ଫଳାଫଳ ଆଶା ନ ରଖି, ପଦପଦବୀ ପ୍ରତି ଲୋଭ ନ ରଖି ନିଃସ୍ୱାର୍ଥପର ଭାବେ ତୁମେ କର୍ମ କରିଚାଲିଥିଲ। ନୀତି ଆଦର୍ଶ ସଦାସର୍ବଦା ପ୍ରସ୍ଫୁଟିତ ହେଉଥିଲା ତୁମର ପ୍ରତିଟି କାର୍ଯ୍ୟରେ।

ତୁମେ ଥିଲ ସଂଗ୍ରାମୀ। ଯୋଦ୍ଧା। ସାହସୀ। ଜୀବନ ଯୁଦ୍ଧରେ ହାରିଗଲେ ସୁଦ୍ଧା ଶେଷ ପର୍ଯ୍ୟନ୍ତ ବଞ୍ଚିବାର ପ୍ରବଳ ଇଚ୍ଛା ନେଇ ତୁମେ ସଂଗ୍ରାମ କରୁଥିଲ। ଘରୁ ଶେଷଥର ପାଇଁ ହସ୍ପିଟାଲ୍ ଗଲାବେଳେ ମୋତେ କହିଥିଲ, 'ସଙ୍କଟକୁ ସାମ୍ନା କରିବାକୁ ପଡ଼ିବ। ବହୁତ କିଛି କରିବାର ଅଛି।' ତୁମ ଶେଷ ପ୍ରାଣବିନ୍ଦୁ ପର୍ଯ୍ୟନ୍ତ ତୁମେ ମୃତ୍ୟୁ ରୂପକ ସଂକଟକୁ ସାମ୍ନା କରିଥିଲ।

ତୁମେ ଆଜି ଆମ ଗହଣରେ ନାହଁ। କିନ୍ତୁ ଆମେ ତୁମ ଉପସ୍ଥିତି ସର୍ବଦା ଉପଲବ୍ଧି କରୁଛୁ।

ତୁମ ଅବର୍ତ୍ତମାନରେ ତୁମର ଯେତେସବୁ ପ୍ରକାଶିତ ଓ ଅପ୍ରକାଶିତ ଲେଖାକୁ ସଂକଳିତ କରିବାର ପ୍ରୟାସ ଆରମ୍ଭ କରିଛି। ପ୍ରଥମ ପର୍ଯ୍ୟାୟରେ ଓଡ଼ିଆ ଭାଷାକୁ ନେଇ ତୁମେ ବିଭିନ୍ନ ସମୟରେ ଲେଖିଥିବା ନିବନ୍ଧଗୁଡ଼ିକୁ ସଂକଳିତ କରିବାର ପ୍ରୟାସ ସ୍ୱରୂପ 'ଭାଷା ଭାବନା' ପୁସ୍ତକ ପ୍ରକାଶ ପାଉଛି। ଏଥିରେ ତୁମର ପ୍ରକାଶିତ ଓ ଅପ୍ରକାଶିତ ଭାଷା ନିବନ୍ଧଗୁଡ଼ିକୁ ସ୍ଥାନିତ କରିଛୁ। ପୁଣି ତୁମେ ଯେମିତି ଲେଖିଥିଲ ଅବିକଳ ସେମିତି ପ୍ରକାଶ କରୁଛୁ। କାରଣ ତୁମ ଲେଖାକୁ ସଂଶୋଧନ କରିବା କିମ୍ବା ସମ୍ପାଦନା କରିବାର ଦକ୍ଷତା କାହିଁ ! ତେଣୁ ତୁମ ଲେଖାକୁ ଏଥିରେ ଅକ୍ଷୁଣ୍ଣ ଛାପିଛୁ। ଆଶା ଓ ବିଶ୍ୱାସ ଏହି ସଂକଳନରେ ସ୍ଥାନିତ ଲେଖାଗୁଡ଼ିକ ଓଡ଼ିଆ ଭାଷା ପ୍ରେମୀମାନଙ୍କୁ ଉଦ୍‌ବୁଦ୍ଧ କରିବ।

**ସ୍ୱର୍ଣ୍ଣଲତା ପରିଡ଼ା**

ଆବାହିକା, ବୈଷ୍ଣବ ପରିଡ଼ା ସ୍ମୃତି ନ୍ୟାସ

ଭୁବନେଶ୍ୱର

# ମାତୃଭାଷାର ଆହ୍ୱାନ

ଭାଷା ହେଉଛି ପ୍ରତ୍ୟେକ ଜାତିର ସର୍ବଶ୍ରେଷ୍ଠ ବୌଦ୍ଧିକ ସମ୍ପଦ। ଦୁନିଆର ପ୍ରତ୍ୟେକଟି ଭାଷା ହେଉଛି ଗୋଟିଏ ଗୋଟିଏ ମାତୃଭାଷା। ଭାଷାକୁ ନେଇ ଜାତିର ସୃଷ୍ଟି ଏବଂ ଭାଷା ହେଉଛି ତା'ର ପରିଚୟ। ଭାଷା କେବଳ ଭାବର ପ୍ରକାଶ ବା ଆଦାନ ପ୍ରଦାନର ମାଧ୍ୟମ ନୁହେଁ ଏହା ହେଉଛି ତା'ର ଶିକ୍ଷା, ସଂସ୍କୃତି, ଜ୍ଞାନ ବିଜ୍ଞାନର ସଂରକ୍ଷକ ଓ ବାହକ। ଭାଷା ମରିଗଲେ ଜାତି ମରିଯାଏ, ତା'ର ପରିଚୟ ମଧ୍ୟ ଧ୍ୱଂସ ପାଏ। ଭାଷା ବଞ୍ଚିରହେ ତା'ର ବ୍ୟବହାରକୁ ନେଇ। ଭାଷା ବ୍ୟବହୃତ ହୁଏ ପରିବାର, ସମାଜ, ଶିକ୍ଷା, ସାହିତ୍ୟ, ଶାସନ, ବ୍ୟବସାୟ, ବାଣିଜ୍ୟ ଆଦି କ୍ଷେତ୍ରରେ। ଭାଷା ବିନା ଏସବୁ କ୍ଷେତ୍ରରେ କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ। ଅନ୍ୟ ଦିଗରେ ଏହିସବୁ କ୍ଷେତ୍ରରେ ଭାଷାକୁ ବ୍ୟବହାର ନକଲେ ସେ ଭାଷା ମରିବାକୁ ବାଧ୍ୟ ହୁଏ। ପିଢ଼ି ପରେ ପିଢ଼ି ନିଜର ମାତୃଭାଷାକୁ ବ୍ୟବହାର ନ କଲେ ସେ ଭାଷା ମରିଯାଏ। ଗୋଟିଏ ଜାତି ଆଉ ଗୋଟିଏ ଜାତିର ଶାସନାଧୀନ ହୋଇଗଲେ ଶାସକ ଶ୍ରେଣୀର ଭାଷା ସେଠାକାର ଶାସନ, ନ୍ୟାୟାଳୟ, ଶିକ୍ଷା, ବ୍ୟବସାୟ ବାଣିଜ୍ୟର ଭାଷା ହୁଏ। ଆଉ କେତେକ କ୍ଷେତ୍ରରେ ଗୋଟିଏ ଭାଷା କହୁଥିବା ଜାତିଟିର ଶେଷ ଲୋକଟି ମୃତ୍ୟୁବରଣ କଲେ ସେ ଭାଷା

ବି ଲୋପ ପାଇଯାଏ। ଭାଷା ବିଜ୍ଞାନୀଙ୍କ ମତରେ ପୃଥିବୀରେ ଏବେ ପ୍ରାୟ ୭୦୦୦ ଭାଷା ଅଛି। କିନ୍ତୁ ଉପରୋକ୍ତ ନକାରାତ୍ମକ ପ୍ରକ୍ରିୟା ହେତୁ ୪୦୦ରୁ ଅଧିକ ଭାଷା ଇତିମଧ୍ୟରେ ଲୋପ ପାଇଗଲେଣି। ଚଳିତ ଶତାବ୍ଦୀରେ ଭାରତ ସମେତ ପୃଥିବୀର ଅର୍ଦ୍ଧାଧିକ ଭାଷା ଲୋପ ପାଇଯିବ ବୋଲି ସେମାନେ ଭବିଷ୍ୟବାଣୀ କରିଛନ୍ତି।

ପୃଥିବୀର ଭାଷାମାନଙ୍କର ସଂରକ୍ଷଣ ଓ ସେସବୁର ବିକାଶ ସାଧନ ପାଇଁ ଜାତିସଂଘ ତଥା ଅନ୍ୟ ଦେଶମାନେ ଅନେକ ପଦକ୍ଷେପ ନେଇଛନ୍ତି। ମାତୃଭାଷା ସଂପର୍କରେ ଲୋକଙ୍କୁ ସଚେତନ କରିବା ସହିତ ନିଜର ମାତୃଭାଷାକୁ ଆଦର କରିବା ପାଇଁ ୨୦୦୦ ମସିହାରୁ ଫେବୃଆରୀ ୨୧ ତାରିଖକୁ ଆନ୍ତର୍ଜାତିକ ମାତୃଭାଷା ଦିବସ ରୂପେ ସବୁ ଦେଶରେ ପାଳନ କରାଯାଉଛି। ଫେବୃଆରୀ ୨୧ ହେଉଛି ବଙ୍ଗଳା ଦେଶର ଇତିହାସରେ ଏକ ସ୍ମରଣୀୟ ଦିବସ। ଧର୍ମ ଭିତ୍ତିରେ ପାକିସ୍ଥାନ ଗଠିତ ହେଲା ପରେ ଉର୍ଦ୍ଦୁକୁ ସେ ଦେଶର ସରକାରୀ ଭାଷା ରୂପେ ଘୋଷଣା କରାଗଲା। ଏହାକୁ ପୂର୍ବପାକିସ୍ଥାନ ବା ବର୍ତ୍ତମାନର ବଙ୍ଗଳାଦେଶର ବଙ୍ଗୀୟମାନେ ଘୋର ବିରୋଧ କରିଥିଲେ। ୧୯୫୨ ମସିହା ଫେବୃୟାରୀ ୨୧ରେ ଅନୁଷ୍ଠିତ ଦେଶବ୍ୟାପୀ ଆନ୍ଦୋଳନରେ ଅନେକ ବଙ୍ଗୀୟ ଛାତ୍ରଙ୍କୁ ପାକିସ୍ଥାନୀ ପୋଲିସ ଗୁଳିରେ ପ୍ରାଣ ଦେବାକୁ ପଡ଼ିଥିଲା। ପରେ ପାକିସ୍ଥାନ ସରକାର ବାଧ୍ୟ ହୋଇଥିଲା ସମ୍ବିଧାନ ପରିବର୍ତ୍ତନ କରି ୧୯୫୬ରେ ବଙ୍ଗଳାକୁ ପୂର୍ବ ପାକିସ୍ଥାନର ରାଜଭାଷା ରୂପେ ଘୋଷଣା କରିବାକୁ। ପୂର୍ବତନ ପୂର୍ବପାକିସ୍ଥାନ ଓ ବର୍ତ୍ତମାନର ବଙ୍ଗଳା ଦେଶରେ ନିଜ ମାତୃଭାଷାକୁ ରକ୍ଷା କରିବା ପାଇଁ ଲୋକମାନଙ୍କର ଅଭୂତପୂର୍ବ ସଂଗ୍ରାମ ଓ ଆତ୍ମବଳୀଦାନକୁ ସମ୍ମାନ ଦେଇ ଜାତିସଂଘ ପକ୍ଷରୁ ଏହି ଦିବସଟିକୁ ଆନ୍ତର୍ଜାତିକ ମାତୃଭାଷା ଦିବସ ରୂପେ ପାଳନ କରାଯାଉଛି। ନିଜ ମାତୃଭାଷାରେ କଥା ହେବା ଏବଂ ପରିବାର, ସମାଜ, ଶିକ୍ଷା, ସାହିତ୍ୟ, ଶାସନ, ନ୍ୟାୟାଳୟ, ବ୍ୟବସାୟ ବାଣିଜ୍ୟର ଭାଷା ରୂପେ ବ୍ୟାପକ ବ୍ୟବହାର କରିବା ହେଉଛି ନିଜ ମାତୃଭାଷାକୁ ସୁରକ୍ଷିତ ଏବଂ ବିକଶିତ କରିବାର ଏକମାତ୍ର ଉପାୟ। ଏହି ନୀତିକୁ କାର୍ଯ୍ୟକାରୀ କରିବା ପ୍ରତ୍ୟେକ ରାଜ୍ୟ ବା ଦେଶର ଉଭୟ ଶାସକ ତଥା ଶାସିତମାନଙ୍କର କର୍ତ୍ତବ୍ୟ। ଶାସକମାନେ ଯଦି ଶାସନ, ଶିକ୍ଷା, ନ୍ୟାୟାଳୟ, ବ୍ୟବସାୟ, ବାଣିଜ୍ୟ ଆଦିରେ ନିଜ ମାତୃଭାଷାର ବ୍ୟବହାର ନ କରନ୍ତି ତେବେ ମାତୃଭାଷାର ବ୍ୟବହାର କମିକମି ଯାଏ। ନିଜ ମାତୃଭାଷା ଜୀବନ ଜୀବିକାର ଭାଷା ନ ହେଲେ ତାକୁ ଅଧ୍ୟୟନ କରିବାକୁ ନୂଆ ପିଢ଼ି ଆଗ୍ରହ ପ୍ରକାଶ କରନ୍ତି ନାହିଁ। ଶାସନର ଭାଷା ପାରିବାରିକ, ସାମାଜିକ ଏବଂ ଗଣମାଧ୍ୟମର ଭାଷାକୁ ପ୍ରଭାବିତ କରେ। ଏହି ପ୍ରକ୍ରିୟା ମଧ୍ୟରେ

ସାହିତ୍ୟ ସର୍ଜନା ମଧ୍ୟ କ୍ରମଶଃ ବାଧାପ୍ରାପ୍ତ ହୁଏ। ତା'ର ପାଠକ ସଂଖ୍ୟା କମିକମି ଆସେ।

ତେଣୁ ମାତୃଭାଷାର ସୁରକ୍ଷା ଓ ବିକାଶ ଉକ୍ତ ଜାତିର ଅସ୍ତିତ୍ୱର ବିକାଶ ସହିତ ଅଙ୍ଗାଙ୍ଗୀ ଭାବେ ଜଡିତ। ଶିଳ୍ପ, ବାଣିଜ୍ୟ ଓ ଗମନାଗମନର ବିକାଶ କରିଦେଲେ ଗୋଟାଏ ଭୂଖଣ୍ଡର ବିକାଶ ସାଧିତ ହୋଇପାରେ। କିନ୍ତୁ ସେ ଭୂଖଣ୍ଡରେ ବସବାସ କରୁଥିବା ଜାତିର ଭାଷା, ସାହିତ୍ୟ, ସାଂସ୍କୃତି, ବୌଦ୍ଧିକ ଓ ଆତ୍ମିକ ବିକାଶ ଯଦି ନହୁଏ ତେବେ ତାହାକୁ ବିକାଶ ବୋଲି କହିହେବ ନାହିଁ। ମାତୃଭାଷାର ସୁରକ୍ଷା ଏବଂ ବିକାଶ ଏକାନ୍ତ ଜରୁରୀ। ଭାଷା ହେଉଛି ସ୍ୱାଧିକାର ଓ ସ୍ୱାଭିମାନର ପ୍ରତୀକ। ତେଣୁ ସ୍ୱାଧୀନତା ପରେ ଆମ ଜାତୀୟ ନେତାମାନଙ୍କର ପ୍ରଥମ କାର୍ଯ୍ୟ ଥିଲା କେନ୍ଦ୍ର ଏବଂ ରାଜ୍ୟମାନଙ୍କରେ ବିଦେଶୀ ଇଂରେଜୀ ଭାଷା ବଦଳରେ ନିଜର ମାତୃଭାଷାକୁ ଶାସନ, ନ୍ୟାୟାଳୟ, ଶିକ୍ଷା, ବ୍ୟବସାୟ ବାଣିଜ୍ୟର ଭାଷା କରିବା। ଭାରତର ଅନ୍ୟ ରାଜ୍ୟମାନଙ୍କ ପରି ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ୧୯୫୪ରେ ଓଡ଼ିଆ ସରକାରୀ ଭାଷା ଆଇନ ପ୍ରଣୀତ ହୋଇ ଲାଗୁ ହେଲା । କିନ୍ତୁ ଦୁଃଖର କଥା, ଏ ଯାଏ ରାଜ୍ୟର ଶାସକମାନେ ତାହାକୁ କାର୍ଯ୍ୟକାରୀ କଲେ ନାହିଁ। ଫଳରେ କ୍ରମଶଃ ଓଡ଼ିଆ ଭାଷା ଆଜି ଶାସନ, ନ୍ୟାୟ ବ୍ୟବସ୍ଥା, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଲୋପ ପାଇଗଲାଣି। ଶାସକ ଏବଂ ପ୍ରଶାସକମାନେ ଓଡ଼ିଆରେ ଲେଖିପାରୁ ନାହାନ୍ତି। ଶିକ୍ଷିତ ଓଡ଼ିଆମାନେ ଇଂରାଜୀ ଶବ୍ଦ ବ୍ୟବହାର ନକଲେ ନିଜ ମାତୃଭାଷାରେ କଥା ଦି'ପଦ କହି ପାରୁନାହାନ୍ତି। ଓଡ଼ିଆ ମାଧ୍ୟମ ସ୍କୁଲଗୁଡ଼ିକର ଶିକ୍ଷାର ମାନ ଅତି ତଳକୁ ଚାଲିଗଲାଣି ଏବଂ ସେସବୁଥିରେ ଓଡ଼ିଆ ପଢ଼ାଇବା ପାଇଁ ଓଡ଼ିଆ ଶିକ୍ଷକ ନାହାନ୍ତି। ସମାଜର ଉଚ୍ଚମଧ୍ୟବିତ୍ତ ଶ୍ରେଣୀ ଏବଂ ସରକାରୀ ଅଫିସରମାନେ ସେମାନଙ୍କ ପିଲାଙ୍କୁ ଆଉ ଓଡ଼ିଆ ମାଧ୍ୟମ ସ୍କୁଲକୁ ପଠାଉ ନାହାନ୍ତି। ସେମାନେ ନିଜ ପିଲାମାନଙ୍କ ପାଇଁ ଶହଶହ ଇଂରେଜୀ ସ୍କୁଲ ମଧ୍ୟ ଖୋଲି ଦେଲେଣି।

ଏସବୁ ଦ୍ୱାରା ଓଡ଼ିଆ ଭାଷାର ବ୍ୟବହାର ଲୋପ ପାଇବାରେ ଲାଗିଛି। ଏହି ଧ୍ୱଂସମୁଖୀ ପ୍ରକ୍ରିୟାକୁ ରୋକିବା ପାଇଁ ଓଡ଼ିଶାରେ ଗତ ପାଞ୍ଚବର୍ଷ ଧରି ଚାଲିଛି ଭାଷା ସୁରକ୍ଷା ଆନ୍ଦୋଳନ। ମାତୃଭାଷାକୁ ସୁରକ୍ଷା ପାଇଁ ପ୍ରଥମେ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବାକୁ 'ଭାଷା ସୁରକ୍ଷା ସମ୍ମିଳନୀ' ଦାବୀ କରି ଆସିଛି। ଏହା ଦ୍ୱାରା ଓଡ଼ିଆ ଭାଷା ଓଡ଼ିଆ ପିଲାମାନଙ୍କ ପାଇଁ ଜୀବନ ଜୀବିକାର ଭାଷା ହୋଇ ପାରିବ। ସେମାନେ ଓଡ଼ିଆ ପଢ଼ିବାକୁ ସ୍ୱତଃ ଆଗ୍ରହୀ ହେବେ। ଇଂରେଜୀ ବା ଅନ୍ୟ ବିଦେଶୀ ଭାଷା ଶିଖିବା ସହିତ ନିଜ ଭାଷା ମାଧ୍ୟମରେ ଶିକ୍ଷାଲାଭ କରିବେ। ଲୋକେ

ଓଡ଼ିଆ ଭାଷାରେ ଶାସନର ସୁଫଳ ଓ ନ୍ୟାୟାଳୟରୁ ନ୍ୟାୟ ପାଇ ପାରିବେ। କିନ୍ତୁ ଦୁଃଖର କଥା ବର୍ତ୍ତମାନ କ୍ଷମତାରେ ଥିବା ନେତା ଏବଂ ପ୍ରଶାସକମାନେ ଲୋକମାନଙ୍କର ଗଣତାନ୍ତ୍ରିକ ଅଧିକାର ଓ ଓଡ଼ିଆ ଭାଷାର ସୁରକ୍ଷା କାଥା ଭାବିବାକୁ ପ୍ରସ୍ତୁତ ନୁହଁନ୍ତି। ନାନା ଆଳ ଦେଖାଇ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ନିମିତ୍ତ ରାଜ୍ୟରେ ଏକ ସରକାରୀ ଭାଷା ଆୟୋଗ ଗଠନ କରୁନାହାନ୍ତି। ଉଚ୍ଚ କ୍ଷମତା ସଂପନ୍ନ ସରକାରୀ ଭାଷା ଆୟୋଗ ବିନା ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ହୋଇ ପାରିବ ନାହିଁ। କାରଣ ଦୀର୍ଘ ୬୪ ବର୍ଷ ଧରି ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ନହେବା ହେତୁ ଇଂରେଜୀ ଏବଂ ହିନ୍ଦୀର ପ୍ରଭାବ ଆମର ଜନଜୀବନ, ଶିକ୍ଷା, ଶାସନ, ଗଣମାଧ୍ୟମ, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରକୁ ବହୁଳ ଭାବେ ପ୍ରଭାବିତ କରିଛି। ଶାସନରେ ଥିବା ଅଧିକାରୀମାନେ ଏହି ଆଇନକୁ କାର୍ଯ୍ୟକାରୀ କରିବାକୁ ଅମଙ୍ଗ। ସେମାନେ ଓଡ଼ିଆ ଲେଖିବା ପଢ଼ିବା ଭୁଲିଗଲେଣି। ରାଜନୈତିକ ନେତୃତ୍ୱର ଏ ଦିଗରେ ଦୃଢ଼ ଇଚ୍ଛା ନାହିଁ କି ପ୍ରଶାସନକୁ ବାଧ୍ୟ କଲାଭଳି ଶକ୍ତି ନାହିଁ। ଏପରି ଅବସ୍ଥାରେ ଭାରତର ଅନ୍ୟ ରାଜ୍ୟମାନଙ୍କ ପରି ଏକ ଅର୍ଦ୍ଧନ୍ୟାୟିକ କ୍ଷମତାସଂପନ୍ନ ସରକାରୀ ଭାଷା ଆୟୋଗ ଓ ଆଇନର ଖିଲାପକାରୀଙ୍କ ବିରୋଧରେ ଦଣ୍ଡବିଧାନ ବ୍ୟବସ୍ଥା ନହେଲେ ଉଚ୍ଚ ଅମଲାତନ୍ତ୍ର ଏହାକୁ କାର୍ଯ୍ୟକାରୀ କରିବ ନାହିଁ। ସେମାନେ ଡରୁଛନ୍ତି ଏହି ଆୟୋଗ ଗଠନ ହେଲେ ଏହା ସେମାନଙ୍କୁ ବାଧ୍ୟ କରିବ ଆଇନକୁ କାର୍ଯ୍ୟକାରୀ କରିବା ପାଇଁ । ତେଣୁ ଲୋକଙ୍କୁ ବିଭ୍ରାନ୍ତ କରିବା ପାଇଁ ସେମାନେ ସରକାରଙ୍କୁ ପରାମର୍ଶ ଦେଇଛନ୍ତି ଓଡ଼ିଆ ଭାଷାର ପ୍ରସାର ଓ ପ୍ରଚାର ନିମିତ୍ତ ଆଉ ଏକ ଭାଷା ଆୟୋଗ ଗଠନ କରିବାକୁ।

ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ପାଇଁ ଓଡ଼ିଆ ଭାଷା ପ୍ରତିଷ୍ଠାନ, ସାହିତ୍ୟ ଏକାଡେମୀ, ବିଭିନ୍ନ ବିଶ୍ୱ ବିଦ୍ୟାଳୟର ଓଡ଼ିଆ ବିଭାଗ ଓ ଅନ୍ୟ ସାହିତ୍ୟ ଅନୁଷ୍ଠାନମାନେ ଏହି କାର୍ଯ୍ୟଟି କରୁଛନ୍ତି। ଏଭଳି ଏକ ଭାଷା ଆୟୋଗ ୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁସବୁ ଦୃଢ଼ ପଦକ୍ଷେପ ନେବାର କଥା ତାହା ନେଇ ପାରିବ ନାହିଁ କି ଦଣ୍ଡ ବିଧାନର ବ୍ୟବସ୍ଥା କରିପାରିବ ନାହିଁ। ତେଣୁ ଓଡ଼ିଶାର ପ୍ରତ୍ୟେକ ସଚେତନ ଭାଷାପ୍ରେମୀ ଓଡ଼ିଆ ସରକାରଙ୍କର ଏହି ଛଳନାପୂର୍ଣ୍ଣ ନୀତି ବିରୋଧରେ ଦଣ୍ଡାୟମାନ ହେବା ଓ ପ୍ରକୃତ ସରକାରୀ ଭାଷା ଆୟୋଗ ଗଠନ କରିବାକୁ ଚାପ ସୃଷ୍ଟି କରିବା ଏକାନ୍ତ ଜରୁରୀ। ଏହି ଆୟୋଗ ପ୍ରଶାସନ, ନ୍ୟାୟ ବ୍ୟବସ୍ଥା, ବିଧାନସଭା, କେନ୍ଦ୍ର ସରକାରୀ ସଂସ୍ଥା, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଭାଷା ଆଇନ କିପରି କାର୍ଯ୍ୟକାରୀ ହେଉଛି ତାହା ତଦାରଖ କରିବ, ସରକାରଙ୍କୁ

ପରାମର୍ଶ ଦେବ ଓ ଦଣ୍ଡବିଧାନ ପାଇଁ ସୁପାରିଶ କରିବ। ରାଜ୍ୟର ମାନବିକ ଅଧିକାର ଆୟୋଗ, ମହିଳା ଆୟୋଗ ଓ ସୂଚନା ଆୟୋଗ ପରି ଏକ ଷ୍ଟାଚ୍ୟୁଟାରୀ ବଡ଼ି ବା ସାମ୍ବିଧାନିକ କ୍ଷମତାସଂପନ୍ନ ସଂସ୍ଥା ଭାବରେ କାର୍ଯ୍ୟ କରିବ। ଗୋଟିଏ ଦିଗରେ ସରକାରୀ ଭାଷା ଆୟୋଗ ସହିତ ଦଣ୍ଡବିଧାନର ବ୍ୟବସ୍ଥା ଏବଂ ଅନ୍ୟ ଦିଗରେ ରାଜ୍ୟବ୍ୟାପୀ ଜାଗ୍ରତ ଭାଷା ସୁରକ୍ଷା ଆନ୍ଦୋଳନ ହିଁ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିପାରିବ । ଏହାହିଁ ହେଉଛି ଆମ ପାଇଁ ଆନ୍ତର୍ଜାତିକ ମାତୃଭାଷା ଦିବସର ଆହ୍ୱାନ।



# ଭାଷା ପାଇଁ ସଂଗ୍ରାମ

ଭାଷା କେବଳ ଭାବର ପ୍ରକାଶ ବା ଆଦାନ ପ୍ରଦାନର ମାଧ୍ୟମ ନୁହେଁ ଏହା ହେଉଛି ତା'ର ଶିକ୍ଷା, ସଂସ୍କୃତି, ଜ୍ଞାନ ବିଜ୍ଞାନର ସଂରକ୍ଷକ ଓ ବାହକ। ଭାଷାଟିଏ ମରିଗଲେ ଜାତିଟିଏ ମରିଯାଏ, ତା'ର ପରିଚୟ ମଧ୍ୟ ଲୋପ ପାଏ। ଭାଷା ସହ ଲୋପ ପାଏ ସେ ଜାତିର ସଂସ୍କୃତି ଓ ଐତିହ୍ୟ। ଭାଷା ବଞ୍ଚିରହେ ତା'ର ବ୍ୟବହାରକୁ ନେଇ। ଭାଷା ବ୍ୟବହୃତ ହୁଏ ପରିବାର, ସମାଜ, ଶିକ୍ଷା, ସାହିତ୍ୟ, ଶାସନ, ବ୍ୟବସାୟ, ବାଣିଜ୍ୟ ଆଦି କ୍ଷେତ୍ରରେ। ଭାଷା ବିନା ଏସବୁ କ୍ଷେତ୍ରରେ କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ। ଅନ୍ୟ ଦିଗରେ ଏହିସବୁ କ୍ଷେତ୍ରରେ ଭାଷାକୁ ବ୍ୟବହାର ନକଲେ ସେ ଭାଷା ମରିବାକୁ ବାଧ୍ୟ ହୁଏ। ପିଢ଼ି ପରେ ପିଢ଼ି ନିଜର ମାତୃଭାଷାକୁ ବ୍ୟବହାର ନକଲେ ସେ ଭାଷା ମରିଯାଏ। ଗୋଟିଏ ଜାତି ଆଉ ଗୋଟିଏ ଜାତିର ଶାସନାଧୀନ ହୋଇଗଲେ ଶାସକ ଶ୍ରେଣୀର ଭାଷା ସେଠାକାର ଶାସନ, ନ୍ୟାୟାଳୟ, ଶିକ୍ଷା, ବ୍ୟବସାୟ ବାଣିଜ୍ୟର ଭାଷା ହୁଏ। ଆଉ କେତେକ କ୍ଷେତ୍ରରେ ଗୋଟିଏ ଭାଷା କହୁଥିବା ଜାତିଟିର ଶେଷ ଲୋକଟି ମୃତ୍ୟୁବରଣ କଲେ ସେ ଭାଷା ବି ଲୋପ ପାଇଯାଏ। ଭାଷା ବିଜ୍ଞାନୀଙ୍କ ମତରେ ପୃଥିବୀରେ ଏବେ ପ୍ରାୟ ୭୦୦୦ ଭାଷା ଅଛି। କିନ୍ତୁ ଉପରୋକ୍ତ

ନକାରାତ୍ମକ ପ୍ରକ୍ରିୟା ହେତୁ ୪୦୦ରୁ ଅଧିକ ଭାଷା ଇତିମଧ୍ୟରେ ଲୋପ ପାଇଗଲେଣି। ଚଳିତ ଶତାବ୍ଦୀରେ ଭାରତ ସମେତ ପୃଥିବୀର ଅର୍ଦ୍ଧାଧିକ ଭାଷା ଲୋପ ପାଇଯିବ ବୋଲି ସେମାନେ ଭବିଷ୍ୟବାଣୀ କରିଛନ୍ତି।

ପୃଥିବୀର ଭାଷାମାନଙ୍କର ସଂରକ୍ଷଣ ଓ ସେସବୁର ବିକାଶ ସାଧନ ପାଇଁ ଜାତିସଂଘ ତଥା ଅନ୍ୟ ଦେଶମାନେ ଅନେକ ପଦକ୍ଷେପ ନେଇଛନ୍ତି। ମାତୃଭାଷା ସଂପର୍କରେ ଲୋକଙ୍କୁ ସଚେତନ କରିବା ସହିତ ନିଜର ମାତୃଭାଷାକୁ ଆଦର କରିବା ପାଇଁ ୨୦୦୦ ମସିହାରୁ ଫେବୃଆରୀ ୨୧ ତାରିଖକୁ ଆନ୍ତର୍ଜାତିକ ମାତୃଭାଷା ଦିବସ ରୂପେ ସବୁ ଦେଶରେ ପାଳନ କରାଯାଉଛି। ଫେବୃଆରୀ ୨୧ ହେଉଛି ବଙ୍ଗଳା ଦେଶର ଇତିହାସରେ ଏକ ସ୍ମରଣୀୟ ଦିବସ। ଧର୍ମ ଭିତ୍ତିରେ ପାକିସ୍ତାନ ଗଠିତ ହେଲା ପରେ ଉର୍ଦ୍ଦୁକୁ ସେ ଦେଶର ସରକାରୀ ଭାଷା ରୂପେ ଘୋଷଣା କରାଗଲା। ଏହାକୁ ପୂର୍ବ ପାକିସ୍ତାନ ବା ବର୍ତ୍ତମାନର ବାଂଲାଦେଶର ବଙ୍ଗୀୟମାନେ ଘୋର ବିରୋଧ କରିଥିଲେ। ୧୯୫୨ ମସିହା ଫେବୃୟାରୀ ୨୧ରେ ଅନୁଷ୍ଠିତ ଦେଶବ୍ୟାପୀ ଆନ୍ଦୋଳନରେ ଅନେକ ବଙ୍ଗୀୟ ଛାତ୍ରଙ୍କୁ ପାକିସ୍ତାନୀ ପୋଲିସ ଗୁଳିରେ ପ୍ରାଣ ଦେବାକୁ ପଡ଼ିଥିଲା। ପରେ ପାକିସ୍ତାନ ସରକାର ବାଧ୍ୟ ହୋଇଥିଲା ସମ୍ବିଧାନ ପରିବର୍ତ୍ତନ କରି ୧୯୫୬ରେ ବଙ୍ଗଳାକୁ ପୂର୍ବ ପାକିସ୍ତାନର ରାଜଭାଷା ରୂପେ ଘୋଷଣା କରିବାକୁ। ପୂର୍ବତନ ପୂର୍ବ ପାକିସ୍ତାନ ଓ ବର୍ତ୍ତମାନର ବାଂଲାଦେଶରେ ନିଜ ମାତୃଭାଷାକୁ ରକ୍ଷା କରିବା ପାଇଁ ଲୋକମାନଙ୍କର ଅଭୂତପୂର୍ବ ସଂଗ୍ରାମ ଓ ଆତ୍ମବଳୀଦାନକୁ ସମ୍ମାନ ଦେଇ ଜାତିସଂଘ ପକ୍ଷରୁ ଏହି ଦିବସଟିକୁ ଆନ୍ତର୍ଜାତିକ ମାତୃଭାଷା ଦିବସ ରୂପେ ପାଳନ କରାଯାଉଛି। ନିଜ ମାତୃଭାଷାରେ କଥା ହେବା ଏବଂ ପରିବାର, ସମାଜ, ଶିକ୍ଷା, ସାହିତ୍ୟ, ଶାସନ, ନ୍ୟାୟାଳୟ, ବ୍ୟବସାୟ ବାଣିଜ୍ୟର ଭାଷା ରୂପେ ବ୍ୟାପକ ବ୍ୟବହାର କରିବା ହେଉଛି ନିଜ ମାତୃଭାଷାକୁ ସୁରକ୍ଷିତ ଏବଂ ବିକଶିତ କରିବାର ଏକମାତ୍ର ଉପାୟ। ଏହି ନୀତିକୁ କାର୍ଯ୍ୟକାରୀ କରିବା ପ୍ରତ୍ୟେକ ରାଜ୍ୟ ବା ଦେଶର ଉଭୟ ଶାସକ ତଥା ଶାସିତମାନଙ୍କର କର୍ତ୍ତବ୍ୟ। ଶାସକମାନେ ଯଦି ଶାସନ, ଶିକ୍ଷା, ନ୍ୟାୟାଳୟ, ବ୍ୟବସାୟ ବାଣିଜ୍ୟ ଆଦିରେ ନିଜ ମାତୃଭାଷାର ବ୍ୟବହାର ନ କରନ୍ତି ତେବେ ମାତୃଭାଷାର ବ୍ୟବହାର କମିକମି ଯାଏ। ନିଜ ମାତୃଭାଷା ଜୀବନ ଜୀବିକାର ଭାଷା ନହେଲେ ତାକୁ ଅଧ୍ୟୟନ କରିବାକୁ ନୂଆ ପିଢ଼ି ଆଗ୍ରହ ପ୍ରକାଶ କରନ୍ତି ନାହିଁ। ଶାସନର ଭାଷା ପାରିବାରିକ, ସାମାଜିକ ଏବଂ ଗଣମାଧ୍ୟମର ଭାଷାକୁ ପ୍ରଭାବିତ କରେ। ଏହି ପ୍ରକ୍ରିୟା ମଧ୍ୟରେ ସାହିତ୍ୟ ସର୍ଜନା ମଧ୍ୟ କ୍ରମଶଃ ବାଧାପ୍ରାପ୍ତ ହୁଏ। ତା'ର ପାଠକ ସଂଖ୍ୟା କମିକମି ଆସେ।

ତେଣୁ ମାତୃଭାଷାର ସୁରକ୍ଷା ଓ ବିକାଶ ଉକ୍ତ ଜାତିର ଅସ୍ତିତ୍ୱର ବିକାଶ ସହିତ ଅଙ୍ଗାଙ୍ଗୀ ଭାବେ ଜଡିତ। ଶିଳ୍ପ, ବାଣିଜ୍ୟ ଓ ଗମନାଗମନର ବିକାଶ କରିଦେଲେ ଗୋଟାଏ ଭୂଖଣ୍ଡର ବିକାଶ ସାଧିତ ହୋଇପାରେ। କିନ୍ତୁ ସେ ଭୂଖଣ୍ଡରେ ବସବାସ କରୁଥିବା ଜାତିର ଭାଷା, ସାହିତ୍ୟ, ସଂସ୍କୃତି, ବୌଦ୍ଧିକ ଓ ଆତ୍ମିକ ବିକାଶ ଯଦି ନହୁଏ ତେବେ ତାହାକୁ ବିକାଶ ବୋଲି କହିହେବ ନାହିଁ। ମାତୃଭାଷାର ସୁରକ୍ଷା ଏବଂ ବିକାଶ ଏକାନ୍ତ ଜରୁରୀ। ଭାଷା ହେଉଛି ସ୍ୱାଧିକାର ଓ ସ୍ୱାଭିମାନର ପ୍ରତୀକ। ତେଣୁ ସ୍ୱାଧୀନତା ପରେ ଆମ ଜାତୀୟ ନେତାମାନଙ୍କର ପ୍ରଥମ କାର୍ଯ୍ୟ ଥିଲା କେନ୍ଦ୍ର ଏବଂ ରାଜ୍ୟମାନଙ୍କରେ ବିଦେଶୀ ଇଂରେଜୀ ଭାଷା ବଦଳରେ ନିଜର ମାତୃଭାଷାକୁ ଶାସନ, ନ୍ୟାୟାଳୟ, ଶିକ୍ଷା, ବ୍ୟବସାୟ ବାଣିଜ୍ୟର ଭାଷା କରିବା। ଭାରତର ଅନ୍ୟ ରାଜ୍ୟମାନଙ୍କ ପରି ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ୧୯୫୪ରେ ଓଡ଼ିଆ ସରକାରୀ ଭାଷା ଆଇନ ପ୍ରଣୀତ ହୋଇ ଲାଗୁ ହେଲା। କିନ୍ତୁ ଦୁଃଖର କଥା ଏ ଯାଏ ରାଜ୍ୟର ଶାସକମାନେ ତାହାକୁ କାର୍ଯ୍ୟକାରୀ କଲେ ନାହିଁ। ଫଳରେ କ୍ରମଶଃ ଓଡ଼ିଆ ଭାଷା ଆଜି ଶାସନ, ନ୍ୟାୟ ବ୍ୟବସ୍ଥା, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଲୋପ ପାଇଗଲାଣି। ଶାସକ ଏବଂ ପ୍ରଶାସକମାନେ ଓଡ଼ିଆରେ ଲେଖିପାରୁ ନାହାନ୍ତି। ଶିକ୍ଷିତ ଓଡ଼ିଆମାନେ ଇଂରାଜୀ ଶବ୍ଦ ବ୍ୟବହାର ନକଲେ ନିଜ ମାତୃଭାଷାରେ କଥା ଦି'ପଦ କହି ପାରୁନାହାନ୍ତି। ଓଡ଼ିଆ ମାଧ୍ୟମ ସ୍କୁଲଗୁଡ଼ିକର ଶିକ୍ଷାର ମାନ ଅତି ତଳକୁ ଚାଲିଗଲାଣି ଏବଂ ସେସବୁଥିରେ ଓଡ଼ିଆ ପଢ଼ାଇବା ପାଇଁ ଓଡ଼ିଆ ଶିକ୍ଷକ ନାହାନ୍ତି। ସମାଜର ଉଚ୍ଚମଧ୍ୟବିତ୍ତ ଶ୍ରେଣୀ ଏବଂ ସରକାରୀ ଅଫିସରମାନେ ସେମାନଙ୍କ ପିଲାଙ୍କୁ ଆଉ ଓଡ଼ିଆ ମାଧ୍ୟମ ସ୍କୁଲକୁ ପଠାଉ ନାହାନ୍ତି। ସେମାନେ ନିଜ ପିଲାମାନଙ୍କ ପାଇଁ ଶହଶହ ଇଂରେଜୀ ସ୍କୁଲ ମଧ୍ୟ ଖୋଲି ଦେଲେଣି।

ଏସବୁ ଦ୍ୱାରା ଓଡ଼ିଆ ଭାଷାର ବ୍ୟବହାର ଲୋପ ପାଇବାରେ ଲାଗିଛି। ଏହି ଧ୍ୱଂସମୁଖୀ ପ୍ରକ୍ରିୟାକୁ ରୋକିବା ପାଇଁ ଓଡ଼ିଶାରେ ଗତ ପାଞ୍ଚବର୍ଷ ଧରି ଚାଲିଛି ଭାଷା ସୁରକ୍ଷା ଆନ୍ଦୋଳନ। ମାତୃଭାଷାକୁ ସୁରକ୍ଷା ପାଇଁ ପ୍ରଥମେ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବାକୁ 'ଭାଷା ସୁରକ୍ଷା ସମ୍ମିଳନୀ' ଦାବୀ କରି ଆସିଛି। ଏହା ଦ୍ୱାରା ଓଡ଼ିଆ ଭାଷା ଓଡ଼ିଆ ପିଲାମାନଙ୍କ ପାଇଁ ଜୀବନ ଜୀବିକାର ଭାଷା ହୋଇ ପାରିବ। ସେମାନେ ଓଡ଼ିଆ ପଢ଼ିବାକୁ ସ୍ୱତଃ ଆଗ୍ରହୀ ହେବେ। ଇଂରେଜୀ ବା ଅନ୍ୟ ବିଦେଶୀ ଭାଷା ଶିଖିବା ସହିତ ନିଜ ଭାଷା ମାଧ୍ୟମରେ ଶିକ୍ଷାଲାଭ କରିବେ। ଲୋକେ ଓଡ଼ିଆ ଭାଷାରେ ଶାସନର ସୁଫଳ ଓ ନ୍ୟାୟାଳୟରୁ ନ୍ୟାୟ ପାଇ ପାରିବେ। କିନ୍ତୁ ଦୁଃଖର କଥା ବର୍ତ୍ତମାନ କ୍ଷମତାରେ ଥିବା ନେତା ଏବଂ ପ୍ରଶାସକମାନେ

ଲୋକମାନଙ୍କର ଗଣତାନ୍ତିକ ଅଧିକାର ଓ ଓଡ଼ିଆ ଭାଷାର ସୁରକ୍ଷା କଥା ଭାବିବାକୁ ପ୍ରସ୍ତୁତ ନୁହଁନ୍ତି। ନାନା ଆଳ ଦେଖାଇ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ନିମିତ୍ତ ରାଜ୍ୟରେ ଏକ ସରକାରୀ ଭାଷା ଆୟୋଗ ଗଠନ କରୁନାହାନ୍ତି। ଉଚ୍ଚ କ୍ଷମତା ସଂପନ୍ନ ସରକାରୀ ଭାଷା ଆୟୋଗ ବିନା ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ହୋଇ ପାରିବ ନାହିଁ। କାରଣ ଦୀର୍ଘ ୬୪ ବର୍ଷ ଧରି ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ନହେବା ହେତୁ ଇଂରେଜୀ ଏବଂ ହିନ୍ଦୀର ପ୍ରଭାବ ଆମର ଜନଜୀବନ, ଶିକ୍ଷା, ଶାସନ, ଗଣମାଧ୍ୟମ, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରକୁ ବହୁଳ ଭାବେ ପ୍ରଭାବିତ କରିଛି। ଶାସନରେ ଥିବା ଅଧିକାରୀମାନେ ଏହି ଆଇନକୁ କାର୍ଯ୍ୟକାରୀ କରିବାକୁ ଅମଙ୍ଗ। ସେମାନେ ଓଡ଼ିଆ ଲେଖିବା ପଢ଼ିବା ଭୁଲିଗଲେଣି। ରାଜନୈତିକ ନେତୃତ୍ୱର ଏ ଦିଗରେ ଦୃଢ଼ ଇଚ୍ଛା ନାହିଁ କି ପ୍ରଶାସନକୁ ବାଧ୍ୟ କଲାଭଳି ଶକ୍ତି ନାହିଁ। ଏପରି ଅବସ୍ଥାରେ ଭାରତର ଅନ୍ୟ ରାଜ୍ୟମାନଙ୍କ ପରି ଏକ ଅର୍ଦ୍ଧନ୍ୟାୟିକ କ୍ଷମତାସଂପନ୍ନ ସରକାରୀ ଭାଷା ଆୟୋଗ ଓ ଆଇନର ଖିଲାପକାରୀଙ୍କ ବିରୋଧରେ ଦଣ୍ଡବିଧାନ ବ୍ୟବସ୍ଥା ନହେଲେ ଉଚ୍ଚ ଅମଲାତନ୍ତ୍ର ଏହାକୁ କାର୍ଯ୍ୟକାରୀ କରିବ ନାହିଁ। ସେମାନେ ଡରୁଛନ୍ତି ଏହି ଆୟୋଗ ଗଠନ ହେଲେ ଏହା ସେମାନଙ୍କୁ ବାଧ୍ୟ କରିବ ଆଇନକୁ କାର୍ଯ୍ୟକାରୀ କରିବା ପାଇଁ। ତେଣୁ ଲୋକଙ୍କୁ ବିଭ୍ରାନ୍ତ କରିବା ପାଇଁ ସେମାନେ ସରକାରଙ୍କୁ ପରାମର୍ଶ ଦେଇଛନ୍ତି ଓଡ଼ିଆ ଭାଷାର ପ୍ରସାର ଓ ପ୍ରଚାର ନିମିତ୍ତ ଆଉ ଏକ ଭାଷା ଆୟୋଗ ଗଠନ କରିବାକୁ।

ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ପାଇଁ ଓଡ଼ିଆ ଭାଷା ପ୍ରତିଷ୍ଠାନ, ସାହିତ୍ୟ ଏକାଡେମୀ, ବିଭିନ୍ନ ବିଶ୍ୱ ବିଦ୍ୟାଳୟର ଓଡ଼ିଆ ବିଭାଗ ଓ ଅନ୍ୟ ସାହିତ୍ୟିକ ଅନୁଷ୍ଠାନମାନେ ଏହି କାର୍ଯ୍ୟଟି କରୁଛନ୍ତି। ଏଭଳି ଏକ ଭାଷା ଆୟୋଗ ୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁସବୁ ଦୃଢ଼ ପଦକ୍ଷେପ ନେବାର କଥା ତାହା ନେଇ ପାରିବ ନାହିଁ କି ଦଣ୍ଡ ବିଧାନର ବ୍ୟବସ୍ଥା କରିପାରିବ ନାହିଁ। ତେଣୁ ଓଡ଼ିଶାର ପ୍ରତ୍ୟେକ ସଚେତନ ଭାଷାପ୍ରେମୀ ଓଡ଼ିଆ ସରକାରଙ୍କର ଏହି ଛଳନାପୂର୍ଣ୍ଣ ନୀତି ବିରୋଧରେ ଦଣ୍ଡାୟମାନ ହେବା ଓ ପ୍ରକୃତ ସରକାରୀ ଭାଷା ଆୟୋଗ ଗଠନ କରିବାକୁ ଚାପ ସୃଷ୍ଟି କରିବା ଏକାନ୍ତ ଜରୁରୀ। ଏହି ଆୟୋଗ ପ୍ରଶାସନ, ନ୍ୟାୟ ବ୍ୟବସ୍ଥା, ବିଧାନସଭା, କେନ୍ଦ୍ର ସରକାରୀ ସଂସ୍ଥା, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଭାଷା ଆଇନ କିପରି କାର୍ଯ୍ୟକାରୀ ହେଉଛି ତାହା ତଦାରଖ କରିବ, ସରକାରଙ୍କୁ ପରାମର୍ଶ ଦେବ ଓ ଦଣ୍ଡବିଧାନ ପାଇଁ ସୁପାରିଶ କରିବ। ରାଜ୍ୟର ମାନବିକ ଅଧିକାର ଆୟୋଗ, ମହିଳା ଆୟୋଗ ଓ ସୂଚନା ଆୟୋଗ ପରି ଏକ ଷ୍ଟାଚ୍ୟୁଟାରୀ ବଡ଼ି ବା

ସାମ୍ବିଧାନିକ କ୍ଷମତାସଂପନ୍ନ ସଂସ୍ଥା ଭାବରେ କାର୍ଯ୍ୟ କରିବ। ଗୋଟିଏ ଦିଗରେ ସରକାରୀ ଭାଷା ଆୟୋଗ ସହିତ ଦଣ୍ଡବିଧାନର ବ୍ୟବସ୍ଥା ଏବଂ ଅନ୍ୟ ଦିଗରେ ରାଜ୍ୟବ୍ୟାପୀ ଜାଗ୍ରତ ଭାଷା ସୁରକ୍ଷା ଆନ୍ଦୋଳନ ହିଁ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିପାରିବ ।





# ପ୍ରତାରିତ ଓଡ଼ିଆ ଭାଷା

ଜାତି ପରାଧୀନ ହୋଇଗଲେ ତା'ର ଭାଷା ବି ପରାଧୀନ ହୋଇଯାଏ। ଶାସକମାନଙ୍କର ଭାଷା ଶାସିତମାନଙ୍କ ଭାଷାକୁ ଗ୍ରାସ କରିବାକୁ ଲାଗେ। ଏସବୁ ଘଟେ ଜାତି ଦୁର୍ବଳ ହୋଇଗଲେ ଓ ଜାତି ମଧ୍ୟରେ ଜାତୀୟ ଚେତନାର ଅବକ୍ଷୟ ଘଟିଲେ। ଜାତି ଅଧିକ ଦିନ ପରାଧୀନ ହୋଇଗଲେ ତା'ର ଅସ୍ମିତା ଓ ଆତ୍ମାଭିମାନକୁ ହୀନମନ୍ୟତା ଗ୍ରାସ କରେ। ତା'ର ସମ୍ଭ୍ରାନ୍ତ ଶ୍ରେଣୀ ନିଜ ସଂକୀର୍ଣ୍ଣ ସ୍ୱାର୍ଥରେ ଅନ୍ଧ ହୋଇ ଜାତୀୟ ସ୍ୱାର୍ଥକୁ ବଳି ପକାଇଦିଅନ୍ତି। ସେମାନଙ୍କ ମଧ୍ୟରୁ ଅନେକ ନିଜର ମାତୃଭାଷାକୁ ଅନାଦର କରି ଶାସକ ଶ୍ରେଣୀର ଭାଷାକୁ ଆଦରି ନିଅନ୍ତି। ଏହା ଦ୍ୱାରା ନିଜର ମାତୃଭାଷା ଅବହେଳିତ ଏବଂ ଅସୁରକ୍ଷିତ ହୋଇପଡ଼େ। ଭାଷା ହେଉଛି ଏକ ଜାତିର ପରିଚୟ, ତା'ର ଚିନ୍ତା ଚିନ୍ତନର ବାହକ। ଭାଷାର ବିକାଶ ନିର୍ଭର କରେ ସମାଜ, ସାହିତ୍ୟ, ଶାସନ, ଶିକ୍ଷା, ସଂଘର, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ତା'ର ବ୍ୟାପକ ବ୍ୟବହାରିକତା ଉପରେ। ଭାଷାର ବ୍ୟବହାର କମିଗଲେ ଏହା ଦୁର୍ବଳ ହୋଇପଡ଼େ। ଦୁର୍ବଳ ଭାଷା ଜରିଆରେ ଉନ୍ନତ ସାହିତ୍ୟ ସୃଷ୍ଟି ହୋଇ ପାରେନା– ଠିକ୍ ଯେମିତି ଜଣେ ଦୁର୍ବଳ ମା' ଏକ ସବଳ ଶିଶୁକୁ ଜନ୍ମ ଦେଇପାରେନା।

ଚାରିଶହ ବର୍ଷର ପରାଧୀନତା ଓଡ଼ିଆମାନଙ୍କର

ଜନ୍ମଭୂମିକୁ ଖଣ୍ଡବିଖଣ୍ଡ କରିଦେଇଛି। ଅସ୍ଥିରତାର କାଳରାହୁ ତାକୁ ଭୀରୁ, ଭୟାତୁର ଓ ଭାଗ୍ୟବାଦୀ କରିଦେଇଛି। ତା'ର ଅର୍ଥନୀତି, ସାମାଜିକ ଅଗ୍ରଗତି ବ୍ୟାହତ ହୋଇଛି। ଜାତିର ରାଜନୈତିକ ଶକ୍ତି ହୀନବଳ ହୋଇପଡ଼ିଛି। ସେ ନୂଆ କୋଣାର୍କ ଆଉ ବାରବାଟି ପରି ଦୁର୍ଜୟ ଦୁର୍ଗସବୁ ଗଢ଼ି ପାରିନି କି ସେସବୁକୁ ସୁରକ୍ଷିତ କରିପାରିନି। ଶାରଳା, ଜଗନ୍ନାଥ ଯୁଗର ସାହିତ୍ୟର ଧାରା ବ୍ୟାହତ ହୋଇଛି। ସେ ସବୁର ଶୁଦ୍ଧ ସୁନ୍ଦର ଭାଷା ପରବର୍ତ୍ତୀ ସାହିତ୍ୟରେ ଲୋକବୋଧ୍ୟ ହୋଇ ରହିପାରିନି। ଶାସକମାନଙ୍କର ଭାଷା ତା' ମଧ୍ୟକୁ ଅନୁପ୍ରବେଶ କରିଛି।

ଏକ ପରାଜିତ ବିଖଣ୍ଡିତ ଜାତିକୁ ପୁଣି ଐକ୍ୟବଦ୍ଧ କରି ଶକ୍ତି ସଞ୍ଚାର କରିବାକୁ ଶିବାଜୀ, ଗୁରୁ ଗୋବିନ୍ଦ ସିଂଙ୍କ ଭଳି ବୀର ପୁରୁଷମାନେ ଓଡ଼ିଆମାନଙ୍କ ମଧ୍ୟରେ ଜନ୍ମନେଇ ନାହାନ୍ତି। ବୀର ସୁରେନ୍ଦ୍ର ସାଏ, ଶହୀଦ ଜୟୀ ରାଜଗୁରୁ, ବକ୍‌ସି ଜଗବନ୍ଧୁଙ୍କ ଭଳି ବୀରମାନେ ସାମୟିକ ଭାବେ ବିଦ୍ରୋହ କରି ପରାଜିତ ହୋଇଛନ୍ତି। ଓଡ଼ିଆମାନଙ୍କୁ ଅପେକ୍ଷା କରିବାକୁ ପଡ଼ିଛି ନିଜର ପରିବାର ଦ୍ୱାରା ପରିତ୍ୟକ୍ତ, ଜାତିବାଦର ଧ୍ୱଜାଧାରୀମାନଙ୍କ ଦ୍ୱାରା ଅଭିଶପ୍ତ ମଧୁସୂଦନ ଦାସଙ୍କ ପାଇଁ। ନିଜର ସବୁକିଛିକୁ ଉତ୍ସର୍ଗକରି ବିଖଣ୍ଡିତ ମା'କୁ ସେ ଖୋଜିଛନ୍ତି, ଭାଇଭାଇ ବୋଲି ଚିତ୍କାର କରିଛନ୍ତି। ମା'କୁ ପାଇ ନାହାନ୍ତି, ଭାଇମାନେ ବି ଶୁଣି ନାହାନ୍ତି। ଘରିଆଡ଼େ ଖାଲି କୁଢ଼କୁଢ଼ ମଢା, ମୃତ ମଣିଷ। ସେସବୁଥିରେ ପ୍ରାଣ ନାହିଁ କି ଭାଷା ନାହିଁ। ଫକୀରମୋହନ, ଗୌରୀଶଙ୍କର, ଗଙ୍ଗାଧର ତାଙ୍କୁ ପାଛୋଟି ଆଣିଛନ୍ତି। ସୁପ୍ତ ଜାତିକୁ ଉଠାଇବା, ମାତୃଭାଷାକୁ ବଞ୍ଚାଇବା, ବିଖଣ୍ଡିତ ଜନ୍ମମାଟିକୁ ସଂଘବଦ୍ଧ କରିବା ପାଇଁ ଚାଲିଛି ଅବିରାମ ସଂଗ୍ରାମ। ନିର୍ବାପିତ ଦୀପରେ ତ୍ୟାଗପୂତ ତୈଳ ଢାଳି ଜାତିପ୍ରେମକୁ ପ୍ରଜ୍ୱଳିତ କରିଛନ୍ତି। ଜାତୀୟ ସଂଗ୍ରାମ ହେଉଛି ଭାଷା, ସାହିତ୍ୟ, ସଂସ୍କୃତିକୁ ସୁରକ୍ଷିତ କରିବାର ଅମୋଘ ଅସ୍ତ୍ର। ଏହି ସଂଗ୍ରାମ ମଧ୍ୟରୁ ପୁଣି ମୁଣ୍ଡଟେକି ଉଠିଛି ଓଡ଼ିଆ ସ୍ୱାଭିମାନ ଓ ଓଡ଼ିଆ ଜାତୀୟ ଚେତନା।

ଗୋଟିଏ ଦିଗରେ ଜାତୀୟ କଂଗ୍ରେସ ନେତୃତ୍ୱରେ ଦେଶବ୍ୟାପୀ ସ୍ୱାଧୀନତା ସଂଗ୍ରାମର ପ୍ଲାବନ। ଅନ୍ୟ ଦିଗରେ ଓଡ଼ିଆମାନଙ୍କ ମଧ୍ୟରେ ନିଜର ଭୌଗୋଳିକ ପରିଚିତି ପାଇଁ ଆନ୍ଦୋଳନ। ସେଇ ସଂଗ୍ରାମ ମଧ୍ୟରୁ ଜନ୍ମ ନେଇଥିଲା ଓଡ଼ିଆ ଜାତୀୟତାବାଦ ଏବଂ ସୃଷ୍ଟି ହୋଇଥିଲା ଓଡ଼ିଆ ଭାଷା ସାହିତ୍ୟରେ ନବଜାଗରଣ। ଏହାକୁ ପାଥେୟ କରି ସୃଷ୍ଟି ହୋଇଛି ଫକୀରମୋହନ, ରାଧାନାଥ ରାୟ ଓ ଗଙ୍ଗାଧରଙ୍କର କାଳଜୟୀ ସାହିତ୍ୟ। ବିଖଣ୍ଡିତ ବିଚ୍ଛିନ୍ନ ଅଞ୍ଚଳକୁ ନେଇ ଗଠିତ ହୋଇଛି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ବେଳକୁ ଓଡ଼ିଆ ଜାତୀୟତାବାଦର ଆଦ୍ୟସୂରୀମାନେ ଆଉ ଇହଧାମରେ ନଥିଲେ। ଓଡ଼ିଆ ଭାଷାକୁ ଭିତ୍ତିକରି ଓଡ଼ିଶା ପ୍ରଦେଶ ଗଠିତ ହେଲା। କିନ୍ତୁ ଯେଉଁ ଭାଷା ଆଉ ଜାତୀୟତାବାଦକୁ ନେଇ ଓଡ଼ିଆମାନେ ଏକାଠି ହୋଇଥିଲେ ତାକୁ ସୁରକ୍ଷିତ ଏବଂ ଶକ୍ତିଶାଳୀ କରିବାକୁ ନୂତନ ନେତୃତ୍ୱ ଗୁରୁତ୍ୱ ପ୍ରଦାନ କଲେନାହିଁ। ଓଡ଼ିଆ ଭାଷା ଅବହେଳିତ, ପ୍ରତାରିତ ହୋଇ ରହିଗଲା। ସେମାନଙ୍କ ମଧ୍ୟରୁ ଅଧିକାଂଶ ସର୍ବଭାରତୀୟ ଜାତୀୟ ମହାସ୍ରୋତରେ ନିଜକୁ ଭସାଇ ଦେଲେ। ବଂଗାଳୀ, ତାମିଲ, ମରାଠୀମାନେ ସେମାନଙ୍କ ଜାତୀୟତାକୁ ରକ୍ଷା କରିବା ସହିତ ମହାଜାତୀୟତାକୁ ଗ୍ରହଣ କରିନେଇଥିଲେ। ଓଡ଼ିଆ ନେତାମାନେ ତାହା ନକରି ଭାବିନେଲେ ମହାଜାତୀୟତାବାଦର ବିଜୟ ପରେ ଆଂଚଳିକ ଜାତିସତ୍ତାର ପୁନଃଅଭ୍ୟୁଦୟ ଘଟିବ। ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳସବୁ ମୂଳ ଭୂଖଣ୍ଡରେ ମିଶି ପୂର୍ଣ୍ଣାଙ୍ଗ ଓଡ଼ିଶାର ଆବିର୍ଭାବ ହେବ- ଲୋକଙ୍କ ଭାଷାରେ ଲୋକଙ୍କ ଶାସନ ଚାଲିବ।

ଦେଶ ସ୍ୱାଧୀନ ହେଲା। ସମ୍ବିଧାନ ଅନୁଯାୟୀ ଭାଷା ଭିତ୍ତିରେ ଜନ୍ମନେଲେ ନୂଆ ନୂଆ ରାଜ୍ୟସବୁ। ରାଜ୍ୟମାନେ ଇଂରେଜୀ ବଦଳରେ ନିଜ ଭାଷାରେ ଶାସନ, ଶିକ୍ଷା, ନ୍ୟାୟ ବ୍ୟବସ୍ଥା ଚଳାଇବା ପାଇଁ ଅଧିନିୟମ ପ୍ରଣୟନ କଲେ। ସେଇ କ୍ରମରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ନବକୃଷ୍ଣ ଚୌଧୁରୀ ବିଧାନସଭାରେ ସରକାରୀ ଭାଷା ଆଇନ ପାଶ୍ କରି ଓଡ଼ିଆ ଭାଷାକୁ ରାଜଭାଷାର ସମ୍ମାନ ଦେଲେ। ତାଙ୍କରି ଉଦ୍ୟମ ଫଳରେ ଓଡ଼ିଆ ଭାଷା ଦୀର୍ଘ ୪ ଶହ ବର୍ଷ ପରେ ରାଜଭାଷାର ସମ୍ମାନ ପାଇଲା ଏବଂ ଓଡ଼ିଶାର ଶାସନ ଓଡ଼ିଆ ଭାଷାରେ ଆରମ୍ଭ ହେଲା। ଏହି ଆଇନ ଅନୁଯାୟୀ ଓଡ଼ିଆକୁ ଶାସନ, ନ୍ୟାୟାଳୟ ଓ ବିଧାନସଭାର ଭାଷା ରୂପେ ବ୍ୟବହାର କରିବାକୁ ନିର୍ଦ୍ଦେଶ ଦିଆଗଲା। କେତେକ ପ୍ରଶାସନିକ ଅଧିକାରୀ ତଥା ଇଂରେଜୀ ଭାଷାର ସ୍ତାବକମାନଙ୍କ ବିରୋଧ ସତ୍ତ୍ୱେ ନବକୃଷ୍ଣ ଚୌଧୁରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଅକ୍ଲାନ୍ତ ଉଦ୍ୟମ କରିଥିଲେ। ତତ୍କାଳୀନ ବିଧାନସଭାର ଅଧିକାଂଶ ସଦସ୍ୟ ଥିଲେ ସ୍ୱାଧୀନତା ସଂଗ୍ରାମୀ, ଭାଷାପ୍ରେମୀ ବିଦ୍ୱାନ ବ୍ୟକ୍ତି। ଲୋକଙ୍କ ମଧ୍ୟରେ ନିଜ ଭାଷାରେ ଶାସନ, ନ୍ୟାୟ, ଶିକ୍ଷା ପାଇବା ପାଇଁ ଥିଲା ବିପୁଳ ଆଗ୍ରହ। ଏସବୁ ଥିଲା ଜାତୀୟ ସ୍ୱାଧୀନତାର ପ୍ରତୀକ। ଓଡ଼ିଆ ଟାଇପ୍ ରାଇଟର, ଓଡ଼ିଆରେ ନଥିପତ୍ର ଲେଖିବା ପାଇଁ ଅଫିସର କିରାଣୀମାନଙ୍କୁ ପ୍ରଶିକ୍ଷଣ, ପ୍ରଶାସନିକ ଶବ୍ଦକୋଷ ପ୍ରଣୟନ ଆଦି କାର୍ଯ୍ୟକୁ ମୁଖ୍ୟମନ୍ତ୍ରୀ ନିଜେ ତଦାରଖ କରୁଥିଲେ ଏବଂ ପ୍ରୋତ୍ସାହନ ଦେଉଥିଲେ। ଲୋକଙ୍କ ଭାଷାରେ ଶାସନ ବିନା ଗଣତନ୍ତ୍ର ପ୍ରତିଷ୍ଠା ହୋଇପାରିବ ନାହିଁ ବୋଲି ସେ ବିଶ୍ୱାସ କରୁଥିଲେ। ଲୋକହିତକାରୀ ଯୋଜନା,

ସରକାରୀ ନୀତି ନିୟମ ଓଡ଼ିଆ ଭାଷାରେ ନହେଲେ ସେସବୁ ସଫଳ ହେବନାହିଁ ବୋଲି ସେ କହୁଥିଲେ। ଯେଉଁମାନେ ଲୋକଙ୍କ ଭାଷା ଜାଣନ୍ତି ନାହିଁ ସେମାନଙ୍କର ଲୋକଙ୍କୁ ଶାସନ କରିବାର ଅଧିକାର ନାହିଁ ବୋଲି ମତ ଦେଉଥିଲେ। କିନ୍ତୁ ଓଡ଼ିଆ ଜାତିର ଦୁର୍ଭାଗ୍ୟକୁ ସେ ବେଶିଦିନ ଶାସନରେ ରହିଲେ ନାହିଁ। ପୁଣି ଓଡ଼ିଆ ଭାଷା ସରକାରୀ ସ୍ତରରେ ଆଶ୍ରୟହୀନା ହୋଇ ପଡ଼ିଲା। ତାଙ୍କ ପରେ ଯେଉଁମାନେ କ୍ଷମତାକୁ ଆସିଲେ ସେମାନେ ଇଂରେଜୀରେ ଶାସନ ଆରମ୍ଭ କରିଦେଲେ। ଏଥିପାଇଁ ନବବାବୁଙ୍କ ଦ୍ୱାରା ପ୍ରସ୍ତୁତ ଭିତ୍ତିଭୂମି ଅଦରକାରୀ ହୋଇ ଖତ ଖାଇବାକୁ ଲାଗିଲା। ଓଡ଼ିଆ ଭାଷା ପ୍ରତାରିତ ହେଲା।

ନବବାବୁ କ୍ଷମତାରୁ ବିଦାୟ ନେବାର ୩୦ବର୍ଷ ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ଜାନକୀବଲ୍ଲଭ ପଟ୍ଟନାୟକ। ତାଙ୍କର ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଗଭୀର ଅନୁରାଗ ଥିଲା। ଓଡ଼ିଶା ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ନହେବା ଫଳରେ ଲୋକେ ନିଜ ମାତୃଭାଷାରେ ଶାସନ, ନ୍ୟାୟ ପାଉ ନାହାନ୍ତି। ସରକାର ଓ ଲୋକଙ୍କ ମଧ୍ୟରେ ଭାଷାଗତ ବ୍ୟବଧାନ ବୃଦ୍ଧି ପାଉଛି ଏବଂ ସର୍ବୋପରି ଓଡ଼ିଆ ଭାଷାର ପ୍ରଚ୍ଚର ପ୍ରସାର ସୀମିତ ହୋଇଯାଉଛି ବୋଲି ସେ ଅନୁଭବ କରିଥିଲେ। ତା’ ଛଡ଼ା ଓଡ଼ିଆ ଭାଷା ଓଡ଼ିଆମାନଙ୍କର ସ୍ୱାଭିମାନର ପ୍ରତୀକ ବୋଲି ସେ ସବୁବେଳେ କହୁଥିଲେ। ଭାରତବର୍ଷର ଅନ୍ୟ ରାଜ୍ୟମାନଙ୍କରେ ନିଜ ମାତୃଭାଷାରେ ଶାସନ ଚାଲୁଥିଲା ବେଳେ ଓଡ଼ିଶାରେ କାହିଁକି ଏହା ହେବ ନାହିଁ ବୋଲି ପ୍ରଶ୍ନ କରିଥିଲେ। ୧୯୮୫ ମସିହାରେ ଜାନକୀବାବୁ ଭାଷା ଆଇନରେ ପରିବର୍ତ୍ତନ ଆଣି ଏହାକୁ କାର୍ଯ୍ୟକାରୀ କରିବାକୁ ଆରମ୍ଭ କରିଦେଲେ। ଏଥିପାଇଁ ପ୍ରଶାସନରେ ଆବଶ୍ୟକୀୟ ପ୍ରଶିକ୍ଷଣ, ପ୍ରଶାସନିକ ଶବ୍ଦକୋଷ, ଓଡ଼ିଆ ଟାଇପ୍ ରାଇଟର ବ୍ୟବସ୍ଥା ହେଲା। ସେ ଅନିଚ୍ଛୁକ ପ୍ରଶାସନିକ ଅଧିକାରୀମାନଙ୍କୁ ବାଧ୍ୟ କରୁଥିଲେ ଫାଇଲ ନଥିପତ୍ର, ଚିଠି ଆଦି ଓଡ଼ିଆରେ ଲେଖିବାକୁ। ତାଙ୍କର ଏହି ସାଧୁ ଉଦ୍ୟମ ଫଳରେ ପ୍ରଶାସନରେ ଓଡ଼ିଆ ଭାଷାର ବ୍ୟବହାର ଅନେକ ପରିମାଣରେ ଆଗେଇଥିଲା। କିନ୍ତୁ ଗଣତାନ୍ତ୍ରିକ ପ୍ରକ୍ରିୟାରେ ୧୯୯୦ରେ ଜାନକୀବାବୁ କ୍ଷମତାରୁ ବିଦାୟ ନେଲେ। ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ କ୍ଷମତାସୀନ ହେଲେ ବିଜୁ ପଟ୍ଟନାୟକ। ସେ ଓଡ଼ିଶାର ବୈଷୟିକ ବିକାଶ ଉପରେ ଯେତିକି ଗୁରୁତ୍ୱ ଦେଉଥିଲେ ଓଡ଼ିଆ ଭାଷା ସାହିତ୍ୟ ସଂପର୍କରେ ସେତେ ରୁଚି ରଖୁ ନଥିଲେ। ଇଂରେଜୀରେ ଶାସନ ଓ ଶିକ୍ଷା ଦ୍ୱାରା ଓଡ଼ିଶାର ବିକାଶ ଅଧିକ ହେବ ବୋଲି ତାଙ୍କର ଧାରଣା ଥିଲା। ସେ ଭୁଲି ଯାଉଥିଲେ ପୃଥିବୀରେ ଯେଉଁସବୁ ଦେଶ ଆଜି ବିକାଶର ଶୀର୍ଷ ଦେଶରେ ପହଞ୍ଚିଛନ୍ତି ସେମାନେ ସମସ୍ତେ ନିଜ ଭାଷା ମାଧ୍ୟମରେ ତାହା ହାସଲ କରି ପାରିଛନ୍ତି।

ସ୍ୱାଧୀନତା ପରେ ଭାରତର ଯେଉଁସବୁ ରାଜ୍ୟ ଉନ୍ନତି ସାଧନ କରିଛନ୍ତି ସେମାନଙ୍କର ଶାସନ ଓ ଶିକ୍ଷାର ଭାଷା ହେଉଛି ନିଜର ମାତୃଭାଷା । ଇଂରେଜୀରେ ଶାସନ ବ୍ୟବସ୍ଥା ଚାଲିଲେ ଯଦି ଓଡ଼ିଆମାନଙ୍କର ଦ୍ରୁତ ଅଗ୍ରଗତି ହେଉଥାନ୍ତା ତେବେ ଓଡ଼ିଶା ଆଜି କାହିଁକି ଭାରତର ସବୁଠାରୁ ଗରିବ ରାଜ୍ୟ ହୋଇ ରହିଥାନ୍ତା ! ଓଡ଼ିଆ ଭାଷା ପ୍ରତି ଶାସକମାନଙ୍କ ଅବହେଳାର ସୁଯୋଗ ନେଇ ପ୍ରଶାସନ ଅଧିକାରୀ ଓ ଇଂରେଜୀ ପ୍ରେମୀ ବାବୁମାନେ ପୁଣି ଓଡ଼ିଆ ଭାଷାକୁ ତଡ଼ିଦେଇ ଲୋକଙ୍କ ଉପରେ ଇଂରେଜୀକୁ ଲଦିଦେଲେ । ଓଡ଼ିଆ ଭାଷା ପୁଣି ଅପମାନିତ ଏବଂ ପ୍ରତାରିତ ହେଲା । ସବୁଠାରୁ ଦୁର୍ଭାଗ୍ୟର କଥା ଓଡ଼ିଶାର ତତ୍‌କାଳୀନ ତଥାକଥିତ ସଚେତନ ସମ୍ଭ୍ରାନ୍ତ ଓଡ଼ିଆମାନେ ଏହାର ପ୍ରତିରୋଧ କଲେ ନାହିଁ । ବିଜୁବାବୁଙ୍କ ମନ୍ତ୍ରୀମଣ୍ଡଳର କୌଣସି ମନ୍ତ୍ରୀ ବା ତାଙ୍କ ଦଳର କୌଣସି ନେତା ଓଡ଼ିଆ ଭାଷା ପ୍ରତି ଏହି ଅପମାନ ବିରୋଧରେ କେବେ କେଉଁଠି ସ୍ୱର ଉଠାଇ ଥିବାର ନଜିର ଦେଖିବାକୁ ମିଳେ ନାହିଁ । ଯା'ଫଳରେ ଓଡ଼ିଆ ଭାଷା ତା'ର ଜନ୍ମମାଟିରେ ଶାସନ କ୍ଷେତ୍ରରୁ ଲୋପ ପାଇବାକୁ ଲାଗିଥିଲା ।

ବିଜୁବାବୁଙ୍କ ପାଞ୍ଚ ବର୍ଷର ଶାସନ ପରେ ପୁଣି ଜାନକୀବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । କିନ୍ତୁ ଓଡ଼ିଆମାନଙ୍କୁ ଓଡ଼ିଆରେ ଶାସନ, ନ୍ୟାୟ ଦେବା ପାଇଁ ଯେଉଁସବୁ ଭିତ୍ତିଭୂମି ତିଆରି କରିଥିଲେ ସେସବୁ କୁଆଡ଼େ ଅଦୃଶ୍ୟ ହୋଇ ଯାଇଥିଲା– ଓଡ଼ିଆ ଟାଇପ୍ ରାଇଟର, ପ୍ରଶାସନିକ ଶବ୍ଦକୋଷ କେଉଁଠି ଖତ ଖାଉଥିଲା । କିରାଣୀ ଅଫିସରମାନେ ଓଡ଼ିଆରେ ଲେଖିବାକୁ ଭୁଲି ଯାଇଥିଲେ । ଷ୍ଟେନୋଗ୍ରାଫର୍‌ମାନେ ଓଡ଼ିଆରେ ଶ୍ରୁତିଲିଖନ ନେଇପାରୁ ନଥିଲେ । କିନ୍ତୁ ଜାନକୀବାବୁ ହତାଶ ହୋଇନଥିଲେ । ପୁଣି ତାଙ୍କ ହାତଗଢ଼ା ଭଙ୍ଗା ଦଦରା ଘରକୁ ସଜାଡ଼ିବାକୁ ଲାଗିପଡ଼ିଥିଲେ । ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଓଡ଼ିଆପ୍ରେମୀ, ପ୍ରଶାସକ, ଲେଖକ, ଭାଷାବିତ୍‌ମାନଙ୍କୁ ନେଇ ପରାମର୍ଶଦାତା କମିଟି ଗଠନ କଲେ । ବିଶେଷଜ୍ଞମାନଙ୍କୁ ନେଇ କର୍ମଶାଳା ଆୟୋଜନ କରିଥିଲେ । ଅଫିସରମାନଙ୍କୁ ବାରମ୍ବାର ତାଗିଦ୍ କରୁଥିଲେ ଓଡ଼ିଆରେ ଫାଇଲର ନଥିପତ୍ର ତିଆରି କରିବାକୁ । ଇଂରେଜୀରେ ଲିଖିତ ଫାଇଲ ତାଙ୍କ ପାଖକୁ ଆସିଲେ ଦସ୍ତଖତ ନ କରି ଫେରାଇ ଦେଉଥିଲେ ।

୧୯୯୯ ମସିହାରେ ଜାନକୀ ବାବୁ କ୍ଷମତାରୁ ବିଦାୟ ନେଲାପରେ ପ୍ରଶାସନ କ୍ଷେତ୍ରରେ ଓଡ଼ିଆ ଭାଷାର ଭାଗ୍ୟ ଆକାଶରେ ପୁଣି ଅପମାନର ମେଘ ଘୋଟି ଆସିଲା । ଓଡ଼ିଆରେ ଲେଖିପଢ଼ି ଜାଣିନଥିବା ନବୀନ ପଟ୍ଟନାୟକ ଦିଲ୍ଲୀରୁ ଆସି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ବ୍ରିଟିଶ ଶାସନ ଅମଳର ଇଂରେଜୀ ରାଜତ୍ୱ ପୁଣି ପ୍ରତିଷ୍ଠିତ ହେଲା ।

ଓଡ଼ିଆ ଭାଷାରେ ଓଡ଼ିଶାର ଶାସନ ଚାଲିବ, ଓଡ଼ିଆ ଭାଷା ଓଡ଼ିଆ ପିଲାଙ୍କ ପାଇଁ ଜୀବନ ଜୀବିକାର ଭାଷା ହେବ ବୋଲି ଯେଉଁମାନେ ସ୍ୱପ୍ନ ଦେଖୁଥିଲେ ସେମାନେ ନିରାଶ ହେଲେ। ଇଂରେଜୀରେ ଶାସନ ଚାଲିବା ହେତୁ ଇଂରେଜୀ ଶିକ୍ଷାର ପ୍ରାଧାନ୍ୟ ବଢ଼ିଲା। ଓଡ଼ିଆ ମାଧ୍ୟମ ସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷାର ମାନ କମିବାକୁ ଲାଗିଲା। ଓଡ଼ିଆ ପିଲାମାନେ ଓଡ଼ିଆ ଶିଖିବାକୁ ଆଗ୍ରହ ପ୍ରକାଶ କଲେ ନାହିଁ। ଓଡ଼ିଶାର ପ୍ରାନ୍ତୀୟ ଜିଲ୍ଲାମାନଙ୍କରେ ହିନ୍ଦୀ, ତେଲଗୁ ଏବଂ ବଙ୍ଗଳାର ପ୍ରଭାବ ବଢ଼ିବାକୁ ଲାଗିଲା। ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓଡ଼ିଆ ଜାଣିନଥିବାରୁ ତାଙ୍କର ମନ୍ତ୍ରୀମଣ୍ଡଳର ସଦସ୍ୟ, ବିଧାୟକମାନେ ତାଙ୍କ ସହିତ ଖଣ୍ଡି ଇଂରେଜୀ ବା ଖଣ୍ଡି ହିନ୍ଦୀ କହିବାକୁ ଲାଗିଲେ। ଓଡ଼ିଆ ଭାଷା ପୁଣି ଓଡ଼ିଆଙ୍କ ଦ୍ୱାରା ପ୍ରତାରିତ ହେଲା।

ମାତୃଭାଷାର ଏହି ଦୁର୍ଗତି ଓ ଅବକ୍ଷୟ ବେଳେ ୨୦୦୫-୨୦୦୬ ମସିହାରେ ଓଡ଼ିଶାର ଏକ ବୁଦ୍ଧିଜୀବୀ ସଂଗଠନ ନିଉ ଥିଙ୍କିଙ୍ଗ୍ ଫୋରମ୍ ଓ ସମାଜବାଦୀ ଦଳ ରାଜ୍ୟ ସରକାରଙ୍କର ଏହି ଓଡ଼ିଆମାରଣ ନୀତି ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ। ଆଲୋଚନାଚକ୍ର, ସଭାସମିତି, ବିଧାନସଭା ଆଗରେ ଧାରଣାର ଆୟୋଜନ କରି ୧୯୫୪ ମସିହାର ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଦାବୀ କରିଥିଲେ। ନିଉ ଥିଙ୍କିଙ୍ଗ ଫୋରମ୍‌ର ମୁଁ ଥିଲି ସାଧାରଣ ସଂପାଦକ ଓ ସମାଜବାଦୀ ପାର୍ଟିର ରାଜ୍ୟ ସଭାପତି । ନିଉ ଥିଙ୍କିଙ୍ଗ୍ ଫୋରମ୍ ଓ ସମାଜବାଦୀ ଦଳର ଏହି ଉଦ୍ୟମକୁ ଲୋକସଭାର ପୂର୍ବତନ ବାଚସ୍ପତି ରବି ରାୟ, ଓଡ଼ିଆ ବିଧାନସଭାର ପୂର୍ବତନ ବାଚସ୍ପତି ଯୁଧିଷ୍ଠିର ଦାସ, ସମାଜବାଦୀ ଚିନ୍ତକ କିଶନ ପଟ୍ଟନାୟକ, ଭାଷା ବିଜ୍ଞାନୀ ଦେବୀପ୍ରସନ୍ନ ପଟ୍ଟନାୟକ, ସାହିତ୍ୟିକ ସାତକଡ଼ି ହୋତା, ପତ୍ରକାର ବରେନ୍ଦ୍ରକୃଷ୍ଣ ଧଳ, ଓଡ଼ିଶା ସାହିତ୍ୟ ଏକାଡେମୀର ତତ୍କାଳୀନ ସଭାପତି ଗଣେଶ୍ୱର ମିଶ୍ର, ଡ. କୃଷ୍ଣଚରଣ ବେହେରା ପ୍ରମୁଖ ପୂର୍ଣ୍ଣପ୍ରାଣରେ ସମର୍ଥନ କରୁଥିଲେ ଓ ଆୟୋଜିତ କାର୍ଯ୍ୟକ୍ରମରେ ଯୋଗ ଦେଉଥିଲେ। କିନ୍ତୁ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସରକାରଙ୍କ ଉପରେ ଏହି ସୀମିତ ଆନ୍ଦୋଳନ ବିଶେଷ ପ୍ରଭାବ ପକାଇ ପାରିନଥିଲା। କିନ୍ତୁ ଏହାର ଅନ୍ତଃସ୍ୱର ବଳିଷ୍ଠ ରୂପ ନେଇ ପ୍ରକାଶ ପାଇଥିଲା ୨୦୧୨ ମସିହାରେ। ସରକାରୀ ଦଳର ସାଂସଦ ଥାଇ ମଧ ମୁଁ ଏବଂ କେତେକ ବୁଦ୍ଧିଜୀବୀ ଓଡ଼ିଆ ଭାଷା ଓଡ଼ିଶାରେ ଲୋପ ପାଉଛି ବୋଲି ସ୍ୱର ଉତ୍ତୋଳନ କରି ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଦାବୀ କରିଥିଲୁ। ସରକାର ଏହାକୁ ଏକ ସରକାର- ବିରୋଧୀ କାର୍ଯ୍ୟ ବୋଲି ଚିତ୍ରଣ କରୁଥିଲେ। ତେଣୁ ମାତୃଭାଷାର ସୁରକ୍ଷା ପାଇଁ ଓଡ଼ିଆମାନଙ୍କୁ ଉନବିଂଶ

ଶତାବ୍ଦୀର ଷାଠିଏ/ସତୁରୀ ଦଶକର ଭାଷା ଆନ୍ଦୋଳନ ଭଳି ଆଉ ଏକ ଆନ୍ଦୋଳନ କରିବାକୁ ପଡ଼ିବ ବୋଲି ମୁଁ ଓ ମୋର ବନ୍ଧୁମାନେ ଅନୁଭବ କରିଥିଲୁ। କିନ୍ତୁ ଦେଖାଗଲା, ଯେଉଁ ଓଡ଼ିଆମାନଙ୍କୁ ନେଇ ଆନ୍ଦୋଳନ କରିବାକୁ ହେବ ସେମାନେ ୧୯୫୪ ମସିହାରେ ଏକ ଭାଷା ଆଇନ ପ୍ରଣିତ ହୋଇଥିଲା ବୋଲି ଭୁଲିଯାଇଥିଲେ । ଅନେକ ଜାଣି ନ ଥିଲେ ଭାରତର ପ୍ରାୟ ସବୁରାଜ୍ୟର ସରକାରୀ ଭାଷା ହେଉଛି ସେମାନଙ୍କ ମାତୃଭାଷା। ମାତୃଭାଷାରେ ଶାସନ ହେଉଛି ଲୋକଙ୍କର ଗଣତାନ୍ତ୍ରିକ ଅଧିକାର। ତେଣୁ ଲୋକଙ୍କୁ ଏ ସଂପର୍କରେ ସଚେତନ କରିବା ଥିଲା ପ୍ରଥମ କାର୍ଯ୍ୟ। ଆମକୁ ଗୋଟିଏ ବର୍ଷ ଲାଗିଗଲା ଓଡ଼ିଶାସାରା ବୁଲି ବୁଲି ଲୋକଙ୍କୁ ଏସବୁ ବିଷୟରେ ଅବଗତ କରିବା ପାଇଁ। ଲୋକେ ଏସବୁ ବିଷୟରେ ଜାଣିଲା ପରେ ଭାଷା ଆନ୍ଦୋଳନକୁ ରାଜ୍ୟବ୍ୟାପୀ ଆନ୍ଦୋଳନରେ ପରିଣତ କରିବା ପାଇଁ ଗଭୀର ଆଗ୍ରହ ପ୍ରକାଶ କରିଥିଲେ। ଏହି ଜନଚେତନା ଅଭିଯାନକୁ ଭାଷା ଆନ୍ଦୋଳନରେ ପରିଣତ କରିବା ପାଇଁ ୨୦୧୩ ଜୁଲାଇ ୨୧ ତାରିଖରେ ଗଠନ କରାଯାଇଥିଲା 'ଭାଷା ସୁରକ୍ଷା ସମ୍ମିଳନୀ'। ଏହି ସମ୍ମିଳନୀର ଆୟୋଜକ ଥିଲେ ୨୦୦୫-୦୬ ରେ ଓଡ଼ିଆ ଭାଷାର ସୁରକ୍ଷା ପାଇଁ ସ୍ୱର ଉତ୍ତୋଳନ କରିଥିବା 'ନିଉ ଥିଙ୍କିଙ୍ଗ୍ ଫୋରମ୍' ଓ 'ଭୁବନେଶ୍ୱର ଲେଖକ ସାମ୍ମୁଖ୍ୟ'। ସମ୍ମିଳନୀରେ ୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା, ଭାଷା ଆୟୋଗ ଗଠନ, ଭାଷା ଆଇନ ଭଙ୍ଗକାରୀଙ୍କ ପ୍ରତି ଦଣ୍ଡବିଧାନ, ବିଧାନସଭାରେ ସମସ୍ତ କାର୍ଯ୍ୟ ଓଡ଼ିଆରେ କରିବା, ଶିକ୍ଷା କ୍ଷେତ୍ରରେ ଓଡ଼ିଆକୁ ପ୍ରାଧାନ୍ୟ ଦେବା, ପ୍ରଶାସନିକ ପରୀକ୍ଷାଗୁଡ଼ିକୁ ଓଡ଼ିଆ ମାଧ୍ୟମରେ କରିବା, ଓଡ଼ିଆ ଭାଷାର କଂପ୍ୟୁଟରୀକରଣ ଆଦି ଏଗାର ଦଫା ଦାବୀ ଗୃହୀତ ହୋଇଥିଲା।

ସମ୍ମିଳନୀର ଆହ୍ୱାନ କ୍ରମେ ଓଡ଼ିଶାର ଇତିହାସରେ ପ୍ରଥମ ଥର ପାଇଁ ମାତୃଭାଷାରେ ଶାସନ ଦାବୀକରି ଓଡ଼ିଶାର ଲକ୍ଷାଧିକ ଲୋକ ମୁଖ୍ୟମନ୍ତ୍ରୀଙ୍କୁ ପୋଷ୍ଟକାର୍ଡ଼ ଚିଠି ଲେଖିଲେ। ରାଜ୍ୟର ସମସ୍ତ ଜିଲ୍ଲାପାଳଙ୍କ ଅଫିସ ଆଗରେ ଧାରଣା ଓ ବିକ୍ଷୋଭ ପ୍ରଦର୍ଶନ କରି ମୁଖ୍ୟମନ୍ତ୍ରୀଙ୍କୁ ଦାବୀପତ୍ରମାନ ପଠାଗଲା। ଭୁବନେଶ୍ୱରରେ ଭାଷାପ୍ରେମୀମାନେ ଅନଶନ କଲେ ଏବଂ ରାଜ୍ୟସାରା ମଶାଲ ଶୋଭାଯାତ୍ରା କରି ଇଂରେଜୀ ଲେଖା ନାମ ଫଳକରେ କାଳିବୋଳି ଦେଲେ। ଭୁବନେଶ୍ୱରଠାରୁ ଆରମ୍ଭ କରି ବ୍ଲକ୍‌ସ୍ତର ପର୍ଯ୍ୟନ୍ତ ଶହଶହ ସଭା ସମ୍ମିଳନୀ କରି ଲକ୍ଷଲକ୍ଷ ପ୍ରଚାର ପତ୍ର ବଂଟାଗଲା। ଏହି ଆନ୍ଦୋଳନର ପ୍ରଥମ ପ୍ରତିଧ୍ୱନି ଉଠିଥିଲା ଓଡ଼ିଶା ବିଧାନସଭାରେ। ବିଧାନସଭାର ସମସ୍ତ କାର୍ଯ୍ୟ ଓଡ଼ିଆରେ ଚାଲିବା ପାଇଁ ବିରୋଧୀ ଦଳର ବିଧାୟକମାନେ ଦାବୀ

କଲେ। ବହୁ ବିତର୍କ ପରେ ସରକାର ରାଜି ହେଲେ ଓଡ଼ିଆ ଭାଷାରେ ବିଲ୍, ବଜେଟ୍ ଓ ବିଜ୍ଞପ୍ତିମାନ କରିବାକୁ। ଏହା ଥିଲା ଭାଷା ଆନ୍ଦୋଳନର ପ୍ରଥମ ବିଜୟ।

ଜନମତର ଚାପରେ ପଡ଼ି ଶେଷକୁ ସରକାର ଭାଷା ଆଇନକୁ କାର୍ଯ୍ୟକାରୀ କରିବାପାଇଁ ଏକ ପାଂଚଜଣିଆ ମନ୍ତ୍ରୀସ୍ତରୀୟ କମିଟି ଗଠନ କଲେ। କିନ୍ତୁ ଏହି କମିଟି ଫଳପ୍ରଦ ନ ହେବାରୁ ରାଜ୍ୟସାରା ପୁଣି ଆନ୍ଦୋଳନ, ସଭାସମିତି ଓ ମଶାଲ ଶୋଭାଯାତ୍ରାମାନ ଆୟୋଜନ କରାଗଲା। ଭାଷା ସୁରକ୍ଷା ସମ୍ମିଳନୀର ଅନୁରୋଧ କ୍ରମେ ବିରୋଧୀ ଦଳର ସଦସ୍ୟମାନେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଦାବୀକରି ବିଧାନସଭାକୁ ଦୁଇଦିନ ଅଚଳ କରିଦେଲେ। ସରକାର ଶେଷକୁ ବାଧ୍ୟ ହୋଇ ୨୦୧୬ ମେ ୨୧ ରେ ଏକ ଅଧ୍ୟାଦେଶ ବଳରେ ଭାଷା ଆଇନରେ ସଂଶୋଧନ ଆଣି ନିୟମାବଳୀ ପ୍ରଣୟନ କଲେ। ଦୀର୍ଘ ପାଞ୍ଚବର୍ଷର ଭାଷା ସୁରକ୍ଷା ଆନ୍ଦୋଳନ ପାଇଁ ଏହା ଥିଲା ଦ୍ୱିତୀୟ ବିଜୟ। କିନ୍ତୁ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ସଂପର୍କରେ ସରକାରଙ୍କର ଅସ୍ପଷ୍ଟ ଧାରଣା, ଇଚ୍ଛାଶକ୍ତିର ଅଭାବ ହେତୁ ପ୍ରଣୀତ ନିୟମାବଳୀରେ କେତେକ ଫାଙ୍କ ରହିଗଲା। ଭାଷା ଆନ୍ଦୋଳନର ମୁଖ୍ୟ ଦାବୀ ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନକୁ ସରକାର ପ୍ରତ୍ୟାଖ୍ୟାନ କରି ଏହାକୁ ଏକ ଅଧପନ୍ତରିଆ ଦନ୍ତହୀନ ଆଇନରେ ପରିଣତ କରିଦେଲେ। ଭାଷା ଆଇନର କାର୍ଯ୍ୟାୟନକୁ ମୂଲ୍ୟାୟନ ଓ ତଦାରଖ କରିବା ଦାୟିତ୍ୱ ଦେଇଦେଲେ ଅମଲାତନ୍ତ୍ର ହାତରେ।

ଭାଷା ଆୟୋଗ ଓ ଦଣ୍ଡବିଧାନ ବ୍ୟବସ୍ଥା ବିନା ଭାଷା ଆଇନ କାର୍ଯ୍ୟକାରୀ ହୋଇପାରିବ ନାହିଁ ବୋଲି ଆମେ ଅତୀତର ଅଭିଜ୍ଞତାରୁ ଜାଣିଛେ। ନବକୃଷ୍ଣ ଚୌଧୁରୀ ଏବଂ ଜାନକୀବଲ୍ଲଭ ପଟ୍ଟନାୟକ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଭାରତର ଅନ୍ୟାନ୍ୟ ରାଜ୍ୟ ପରି ଆମ ରାଜ୍ୟରେ ଏକ ସ୍ୱତନ୍ତ୍ର କ୍ଷମତା ସମ୍ପନ୍ନ ଭାଷା ଆୟୋଗ ଗଠନ କରି ତା' ହାତରେ ଭାଷା ଆଇନର କାର୍ଯ୍ୟାୟନ ଓ ମୂଲ୍ୟାୟନ ଦାୟିତ୍ୱ ଅର୍ପଣ କରିଥିଲେ, ତାଙ୍କ ପରେ ଭାଷା ଆଇନ କାର୍ଯ୍ୟକାରୀ ହେବାରେ ଅସୁବିଧା ରହିନଥାନ୍ତା। ଯେଉଁ ସରକାରୀ ଅଧିକାରୀମାନେ ଭାଷା ଆଇନକୁ କାର୍ଯ୍ୟକାରୀ କରିବାରେ ଅବହେଳା କରିବେ ସେମାନଙ୍କ ଉପରେ ଦଣ୍ଡ ବିଧାନ ପାଇଁ ଏହି ଆୟୋଗ ସମ୍ପୃକ୍ତ ବିଭାଗର ମୁଖ୍ୟଙ୍କୁ ସୁପାରିଶ୍ କରି ପାରିଥାନ୍ତା। ସରକାର ଏସବୁ କାର୍ଯ୍ୟ ନ କରିବା ଫଳରେ ଭାଷା ଆଇନ ଲାଗୁ ହେବାର ୧୧ମାସ ବିତି ଯାଇଥିଲେ ମଧ୍ୟ ସଚିବାଳୟର କୌଣସି ଫାଇଲର ନଥିପତ୍ର ଓଡ଼ିଆରେ ହୋଇପାରିଲା ନାହିଁ କି ମୁଖ୍ୟମନ୍ତ୍ରୀ ଏବଂ ତାଙ୍କ ମନ୍ତ୍ରୀମଣ୍ଡଳର କୌଣସି ମନ୍ତ୍ରୀ ବା ଉଚ୍ଚ ପଦାଧିକାରୀ ସେଥିରେ ଓଡ଼ିଆରେ ଦସ୍ତଖତ

କରିପାରିଲେ ନାହିଁ । ତେଣୁକରି ଭାଷା ସୁରକ୍ଷା ସମ୍ମିଳନୀ ତା'ର ଆନ୍ଦୋଳନକୁ ଅବ୍ୟାହତ ରଖିବାକୁ ନିଷ୍ପତ୍ତି ନେଇଥିଲା । ରାଜ୍ୟର ବିଭିନ୍ନ ଅଂଚଳରେ ସଭା ସମିତି କରିବା ସହିତ ଗତ ମେ ମାସ ୨୮ତାରିଖରେ ଭୁବନେଶ୍ୱର ସମେତ ସମସ୍ତ ଜିଲ୍ଲାପାଳଙ୍କ ଅଫିସ୍ ଆଗରେ ଧାରଣା ଦେଇ ଭାଷା ଆୟୋଗ ଗଠନ କରିବା ନିମିତ୍ତ ରାଜ୍ୟପାଳଙ୍କୁ ସ୍ମାରକ ପତ୍ର ପ୍ରଦାନ କରାଯାଇଥିଲା । ଭାଷା ସମ୍ମିଳନୀ ସହିତ ଦଣ୍ଡବିଧାନ ଦାବିକରି ଭୁବନେଶ୍ୱରରେ ଭାଷା ପ୍ରେମୀମାନେ ପ୍ରତିଦିନ କଳାପତାକା ପ୍ରଦର୍ଶନ କରି ଚାଲିଛନ୍ତି । ଜନମତର ଚାପରେ ପଡ଼ି ମୁଖ୍ୟମନ୍ତ୍ରୀ ଭାଷା ଆନ୍ଦୋଳନ ଆରମ୍ଭ ହେବାର ୫ବର୍ଷ ପରେ ଗତ ମେ ମାସ ୧୮ ତାରିଖରେ ଭାଷା ସୁରକ୍ଷା ସମ୍ମିଳନୀର ନେତୃବୃନ୍ଦଙ୍କ ସମେତ ଅନ୍ୟ କେତେକ ଅନୁଷ୍ଠାନର କର୍ମକର୍ତ୍ତାଙ୍କ ସହିତ ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନ ସମ୍ପର୍କରେ ଆଲୋଚନା କରିଥିଲେ । ସେ ଏହି ଦାବୀଗୁଡ଼ିକୁ ମାନିଲା ଭଳି ଆଶ୍ୱାସନା ବି ଦେଇଥିଲେ । କିନ୍ତୁ ଦୁଃଖର କଥା ଅତୀତରେ ସରକାର ଭାଷା ଆଇନକୁ କର୍ଯ୍ୟକାରୀ ନ କରିବା ପାଇଁ ଯେଉଁ କାଳକ୍ଷେପଣ ନୀତି ଗ୍ରହଣ କରି ଆସିଥିଲେ ତା'ର ପୁନରାବୃତ୍ତି ହେଲା ଭଳି ମନେହେଉଛି । କାରଣ ମୁଖ୍ୟମନ୍ତ୍ରୀଙ୍କ ଆଶ୍ୱାସନା ପରେ ଇତିମଧ୍ୟରେ ୨ମାସ ବିତିଗଲାଣି । ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନର ବ୍ୟବସ୍ଥା ପାଇଁ ସରକାର କୌଣସି ପଦକ୍ଷେପ ନେଇ ନାହାଁନ୍ତି ।

ସରକାରଙ୍କର ଏତାଦୃଶ ଆଚରଣ ଆଜି କେବଳ ଭାଷା ଆନ୍ଦୋଳନ ନୁହେଁ ସମଗ୍ର ଓଡ଼ିଆ ଜାତିକୁ ଏକ ସନ୍ଧିକ୍ଷଣରେ ଉପନୀତ କରିଛି । ଦୀର୍ଘ ୬୨ ବର୍ଷ ବିତି ଯାଇଥିଲେ ମଧ୍ୟ ଓଡ଼ିଶା ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ହୋଇ ପାରିନାହିଁ । ଏଥିପାଇଁ ନବକୃଷ୍ଣ ଚୌଧୁରୀ ଓ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଛାଡ଼ି ଦେଲେ ଓଡ଼ିଶାକୁ ଶାସନ କରିଥିବା ଏବଂ କରୁଥିବା ମୁଖ୍ୟମନ୍ତ୍ରୀମାନେ ମୁଖ୍ୟତଃ ଦାୟୀ । ଜାନକୀବାବୁଙ୍କ ପରେ ଦୀର୍ଘ ୧୮ ବର୍ଷ ଧରି ଓଡ଼ିଆଭାଷା ସବୁଠାରୁ ଅବହେଳିତ ଏବଂ ପ୍ରତାରିତ ହୋଇ ଆସିଛି । ଶାସନ, ଶିକ୍ଷା, ବ୍ୟବସାୟ ବାଣିଜ୍ୟ ସମେତ ସବୁ କ୍ଷେତ୍ରରେ ଇଂରେଜୀର ପ୍ରଭାବ ବଢ଼ିଚାଲିଛି । ଦୀର୍ଘ ୫ବର୍ଷ ଧରି ଭାଷା ଆନ୍ଦୋଳନ ଚାଲିଥିଲେ ମଧ୍ୟ ସରକାରଙ୍କ ଇଚ୍ଛାଶକ୍ତିର ଅଭାବ ହେତୁ ଭାଷା ଆଇନ କାର୍ଯ୍ୟକାରୀ ହୋଇପାରୁନି ଏବଂ ଶିକ୍ଷା କ୍ଷେତ୍ରରେ ଓଡ଼ିଆ ଭାଷା ଅଧିକରୁ ଅଧିକ ଅବହେଳିତ ହେଉଛି ।

ଗୋଟିଏ ଦିଗରେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟ ସାରା ଭାଷା ଆନ୍ଦୋଳନ ଏବଂ ଅନ୍ୟ ଦିଗରେ ସରକାରଙ୍କ ଅନିଚ୍ଛା । ଓଡ଼ିଆ ଜାତି ତଥା ଓଡ଼ିଆ ଭାଷା ପାଇଁ ଏହା ଏକ ବିରାଟ ଆହ୍ୱାନ ସୃଷ୍ଟି କରିଛି । ଏହି ଆହ୍ୱାନକୁ ଓଡ଼ିଆମାନେ ସାମ୍ନା କରି ନ ପାରିଲେ ଓଡ଼ିଆ ଭାଷା ଆଇନ କାର୍ଯ୍ୟକାରୀ

ହୋଇପାରିବ ନାହିଁ ଏବଂ ଓଡ଼ିଆ ଭାଷା କ୍ରମଶଃ ଅବକ୍ଷୟ ଆଡ଼କୁ ଆଗେଇ ଯିବ। ଏହି ନକାରାତ୍ମକ ପ୍ରକ୍ରିୟାକୁ ରୋକିବା ପାଇଁ ସମସ୍ତ ଓଡ଼ିଆ ଜାତିକୁ ବ୍ୟାପକ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ। ଆମେ ଜାଣିଛେ କୌଣସି ଜାତିର ଭାଷା, ସଂସ୍କୃତି ଓ ସାହିତ୍ୟ କେବଳ ସରକାରଙ୍କ ଉପରେ ନିର୍ଭର କରି ବଞ୍ଚିପାରେନା। ଏଥିପାଇଁ ସରକାର ଓ ସଚେତନ ଜନସାଧାରଣଙ୍କ ସମବେତ ସହଯୋଗ ଆବଶ୍ୟକ। କିନ୍ତୁ ସରକାର ଯଦି ସହଯୋଗ ପରିବର୍ତ୍ତେ ଅସହଯୋଗୀ ହୋଇପଡ଼ନ୍ତି ତେବେ ନିଜ ମାତୃଭାଷାକୁ ବଞ୍ଚାଇବା ପାଇଁ ଓ ସମ୍ମାନ ଦେବାପାଇଁ ଆମ ଆଗରେ ବ୍ୟାପକ ଆନ୍ଦୋଳନ ବିନା ଆଉ କୌଣସି ପନ୍ଥା ନାହିଁ । ଭାଷା ସୁରକ୍ଷା ସମ୍ମିଳନୀର ଚତୁର୍ଥ ପ୍ରତିଷ୍ଠା ଦିବସରେ ଓଡ଼ିଶାର ଭାଷାପ୍ରେମୀ ଭାଇଭଉଣୀମାନଙ୍କୁ ଏହାହିଁ ହେଉଛି ଆମର ଆହ୍ୱାନ। ଓଡ଼ିଶାର ଆଧୁନିକ ଇତିହାସରେ ଓଡ଼ିଆ ଭାଷା ଆମ ରାଜ୍ୟର ସରକାରମାନଙ୍କ ଦ୍ୱାରା ପ୍ରତାରିତ ହୋଇ ଆସିଛି। ଏବେ ଆଉ ପ୍ରତାରିତ ହେବାକୁ ଦେବା ନାହିଁ। ଭାଷା ପ୍ରତାରିତ ହେଲେ ଜାତି ବି ପ୍ରତାରିତ ହୁଏ।



# ଭାଷା ଆନ୍ଦୋଳନ ଓ
# ଓଡ଼ିଆରେ ଓଡ଼ିଶାର ଶାସନ

ଓଡ଼ିଆ ଜାତିର ଚିରସ୍ମରଣୀୟ ପୂର୍ବଜମାନେ ଓଡ଼ିଆ ଭାଷାର ସୁରକ୍ଷା ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସଂଗ୍ରାମ କରୁଥିଲାବେଳେ କେବେ ଚିନ୍ତା କରିନଥିଲେ ଯେ ସେମାନଙ୍କ ସ୍ୱପ୍ନର ଓଡ଼ିଶା ପ୍ରଦେଶ ଗଠନର ୮୦ ବର୍ଷ ପରେ ପୁଣି ଓଡ଼ିଆମାନଙ୍କୁ ମାତୃଭାଷାର ସୁରକ୍ଷା ପାଇଁ ଆଉ ଥରେ ଭାଷା ଆନ୍ଦୋଳନ କରିବାକୁ ପଡ଼ିବ। ସେମାନେ ଭାବିନଥିଲେ ସେମାନଙ୍କ ଦାୟାଦମାନେ ସ୍ୱାଧୀନତା ପରେ ୬୮ ବର୍ଷ ଧରି ଇଂରେଜୀକୁ ଏ ରାଜ୍ୟରେ ରାଜରାଣୀର ସମ୍ମାନ ଦେଇ ନିଜର ମାତୃଭାଷାକୁ ପୋଇଲି ପରି ହତାଦର କରିବେ। ସେମାନେ କଳ୍ପନା କରିନଥିଲେ ସ୍ୱାଧୀନତା ପରେ ବିଦେଶୀ ଗୋଲାମୀର ପ୍ରତୀକ ଇଂରେଜୀ ବଦଳରେ ଓଡ଼ିଶାରେ ଓଡ଼ିଆ ଭାଷାରେ ଶାସନ ପାଇଁ ପ୍ରଣୀତ ଆଇନକୁ ରାଜ୍ୟର ଶାସକମାନେ କାର୍ଯ୍ୟକାରୀ କରିବେ ନାହିଁ ଏବଂ ଓଡ଼ିଆମାନେ ବିନା ପ୍ରତିବାଦରେ ଏହି ଜାତୀୟ ଅପମାନକୁ ମୁଣ୍ଡପାତି ସହିନେବେ। ଏସବୁ କଥା ଭାବିଲା ବେଳେ ମନରେ ପ୍ରଶ୍ନ ଉଠେ ଆମର ପୂର୍ବସୁରୀମାନେ ଓଡ଼ିଆମାନଙ୍କ ମଧ୍ୟରେ ଯେଉଁ ଜାତିପ୍ରେମ ଓ ଭାଷାପ୍ରୀତି ସୃଷ୍ଟି କରିଥିଲେ

ତାହା କ'ଣ ଓଡ଼ିଶା ପ୍ରଦେଶ ଗଠନ ପରେ ଲିଭି ଯାଇଥିଲା ? ଉତ୍କଳୀୟ ଜାତୀୟ ଜୀବନରୁ ଯେଉଁ ହୀନମନ୍ୟତାକୁ ଦୂରେଇବା ପାଇଁ ସେମାନେ ଏତେ ସଂଗ୍ରାମ କରିଥିଲେ ସେମାନଙ୍କ ପରେ ତାହା ପୁଣି କ'ଣ ଉତ୍କଳୀୟ ଚେତନାକୁ ଗ୍ରାସ କରିପକାଇଲା ?

୧୯୫୦ରେ ଭାରତୀୟ ସମ୍ବିଧାନ ଗୃହୀତ ହେଲା ପରେ ଭାରତର ଅନ୍ୟ ରାଜ୍ୟମାନଙ୍କ ପରି ଓଡ଼ିଶାରେ ୧୯୫୪ ସରକାରୀ ଭାଷା ଆଇନ ପ୍ରଣୀତ ହୋଇ ଇଂରେଜୀ ବଦଳରେ ମାତୃଭାଷାରେ ଶାସନ ଚାଲିଲା । ସେତେବେଳେ ଏହି ଆଇନକୁ ଓଡ଼ିଶାର ବଡ଼ବଡ଼ ଅଫିସର  ବିରୋଧ କରୁଥିଲେ । କିନ୍ତୁ ନବକୃଷ୍ଣ ଚୌଧୁରୀଙ୍କ ରାଜନୈତିକ ଇଚ୍ଛାଶକ୍ତି ଆଗରେ ସେମାନଙ୍କୁ ମୁଣ୍ଡ ନୁଆଁଇବାକୁ ପଡ଼ିଥିଲା । ଏହି ଐତିହାସିକ ପ୍ରକ୍ରିୟାଟି ବିଜୁବାବୁଙ୍କ ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଆଉ ଆଗେଇ ପାରିଲା ନାହିଁ । ଏହାର ୨୦ ବର୍ଷପରେ ଜାନକୀ ବାବୁ ଏହାକୁ ଚାଲୁ କରିବାପାଇଁ ଅଣ୍ଟା ଭିଡିଥିଲେ । କିନ୍ତୁ ତାଙ୍କ ପରେ ପ୍ରକ୍ରିୟାଟି ପୁଣି ମୃତ୍ୟୁବରଣ କଲା । ଓଡ଼ିଆମାନେ ବିନା ପ୍ରତିବାଦରେ ଏହାକୁ ସହିନେଲେ । ଏହା ଥିଲା ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ପକ୍ଷରେ ଚରମ ବିଡ଼ମ୍ବନା । ଓଡ଼ିଆରେ ଓଡ଼ିଶାର ଶାସନ ନ ଚାଲିବା ହେତୁ ଓଡ଼ିଆ ଲୋକେ ଯେ କେବଳ ମାତୃଭାଷାରେ ଶାସନ ପାଇବାରୁ ବଂଚିତ ହେଲେ ତାହା ନୁହେଁ, ଓଡ଼ିଆ ଶାସନ, ନ୍ୟାୟାଳୟ, ବ୍ୟବସାୟ ବାଣିଜ୍ୟର ଭାଷା ନ ହେବାରୁ ଓଡ଼ିଆମାନଙ୍କ ପାଇଁ ଏହା ଜୀବନ ଜୀବିକାର ଭାଷା ହୋଇ ପାରିଲା ନାହିଁ । ଇଂରେଜୀ ରାଜଭାଷା ହୋଇଥିବା ହେତୁ ଲୋକେ ସେଇ ଆଡ଼କୁ ମୁହାଁଇଲେ । ଫଳରେ ଓଡ଼ିଶାରେ ଓଡ଼ିଆର ଆଦର ଓ ବ୍ୟବହାର କମିବାକୁ ଲାଗିଲା । ଭାଷାର ବ୍ୟବହାର କମି କମି ଗଲେ ଭାଷା ମରିଯାଏ । ଓଡ଼ିଆ ଭାଷାର ଏହି ନକାରାତ୍ମକ ପ୍ରକ୍ରିୟାକୁ ରୋକିବା ପାଇଁ ୨୦୧୨ ମସିହାରେ ଆରମ୍ଭ ହୋଇଥିଲା ଏକ ଭାଷା ସୁରକ୍ଷା ଅଭିଯାନ । ୧୯୫୪ ମସିହାର ଭାଷା ଆଇନକୁ କାର୍ଯ୍ୟକାରୀ କରିବା ଏବଂ ଶିକ୍ଷା କ୍ଷେତ୍ରରେ ଓଡ଼ିଆ ଶିକ୍ଷା ଓ ଗବେଷଣା ଉପରେ ପ୍ରାଧାନ୍ୟ ଦେବା ଥିଲା ଏହାର ମୁଖ୍ୟ କାର୍ଯ୍ୟକ୍ରମ । ଏଥିପାଇଁ ସରକାରଙ୍କ ଉପରେ ଚାପ ସୃଷ୍ଟି କରିବା ଓ ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟତାବୋଧ ଜାଗ୍ରତ କରିବା ଥିଲା ଏହାର ଲକ୍ଷ୍ୟ । ସେତେବେଳେ ଲୋକେ ଭୁଲି ଯାଇଥିଲେ ୧୯୫୪ ମସିହାର ଭାଷା ଆଇନ କଥା । ଏହି ଅଭିଯାନକୁ ଆନ୍ଦୋଳନରେ ପରିଣତ କରିବା ପାଇଁ ବିଭିନ୍ନ ସଂଗଠନକୁ ନେଇ ୨୦୧୩ ମସିହା ଜୁଲାଇ ୨୧ ତାରିଖରେ ଭୁବନେଶ୍ୱରଠାରେ ଡକାଗଲା ଏକ ରାଜ୍ୟସ୍ତରୀୟ ଭାଷା ସୁରକ୍ଷା ସମ୍ମିଳନୀ । ସମ୍ମିଳନୀରେ ୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା, ଭାଷା ଆୟୋଗ ଗଠନ, ଭାଷା ଆଇନ ଭଙ୍ଗକାରୀଙ୍କ ପ୍ରତି ଦଣ୍ଡବିଧାନ, ବିଧାନସଭାରେ ସମସ୍ତ କାର୍ଯ୍ୟ

ଓଡ଼ିଆରେ କରିବା, ଶିକ୍ଷା କ୍ଷେତ୍ରରେ ଓଡ଼ିଆକୁ ପ୍ରାଧାନ୍ୟ ଦେବା, ପ୍ରଶାସନିକ ପରୀକ୍ଷା ଗୁଡ଼ିକୁ ଓଡ଼ିଆ ମାଧ୍ୟମରେ କରିବା, ଓଡ଼ିଆ ଭାଷାର କଂପ୍ୟୁଟରୀକରଣ ଆଦି ଏଗାର ଦଫା ଦାବୀ ନେଇ ଆନ୍ଦୋଳନ କରିବାକୁ ସ୍ଥିର ହେଲା।

ସମ୍ମିଳନୀର ଆହ୍ୱାନ କ୍ରମେ ଓଡ଼ିଶା ଇତିହାସରେ ପ୍ରଥମଥର ପାଇଁ ମାତୃଭାଷାରେ ଶାସନ ଦାବୀକରି ଓଡ଼ିଶାର ଲକ୍ଷାଧିକ ଲୋକ ମୁଖ୍ୟମନ୍ତ୍ରୀଙ୍କୁ ପୋଷ୍ଟକାର୍ଡ଼ ଚିଠି ଲେଖିଲେ। ରାଜ୍ୟର ସମସ୍ତ ଜିଲ୍ଲାପାଳଙ୍କ ଅଫିସ ଆଗରେ ଧାରଣା ଓ ବିକ୍ଷୋଭ ପ୍ରଦର୍ଶନ କରି ମୁଖ୍ୟମନ୍ତ୍ରୀଙ୍କୁ ଦାବୀପତ୍ରମାନ ପଠାଗଲା। ଭୁବନେଶ୍ୱରରେ ଭାଷାପ୍ରେମୀମାନେ ଅନଶନ କଲେ ଏବଂ ରାଜ୍ୟସାରା ମଶାଲ ଶୋଭାଯାତ୍ରା କରି ଇଂରେଜୀ ଲେଖା ନାମ ଫଳକରେ କାଳି ବୋଳିଦେଲେ। ଭୁବନେଶ୍ୱରଠାରୁ ଆରମ୍ଭ କରି ବ୍ଲକ୍‌ସ୍ତର ପର୍ଯ୍ୟନ୍ତ ଶହଶହ ସଭା ସମ୍ମିଳନୀ କରି ଲକ୍ଷଲକ୍ଷ ପ୍ରଚାର ପତ୍ର ବଣ୍ଟାଗଲା। ଏହି ଆନ୍ଦୋଳନର ପ୍ରଥମ ପ୍ରତିଧ୍ୱନି ଉଠିଥିଲା ଓଡ଼ିଶା ବିଧାନସଭାରେ। ବିଧାନସଭାର ସମସ୍ତ କାର୍ଯ୍ୟ ଓଡ଼ିଆରେ କରିବା ପାଇଁ ବିଧାୟକମାନେ ଦାବୀ କଲେ। ବହୁ ବିତର୍କ ପରେ ସରକାର ରାଜି ହେଲେ ଓଡ଼ିଆ ଭାଷାରେ ବିଲ୍, ବଜେଟ୍ ଓ ବିଜ୍ଞପ୍ତିମାନ କରିବାକୁ। ଏହା ଥିଲା ଭାଷା ଆନ୍ଦୋଳନର ପ୍ରଥମ ବିଜୟ।

ଜନମତର ଚାପରେ ପଡ଼ି ଶେଷକୁ ସରକାର ଭାଷା ଆଇନକୁ କାର୍ଯ୍ୟକାରୀ କରିବାପାଇଁ ଏକ ପାଂଚଜଣିଆ ମନ୍ତ୍ରୀସ୍ତରୀୟ କମିଟି ଗଠନ କଲେ। କିନ୍ତୁ ଏହି କମିଟି ବିଶେଷ ଫଳପ୍ରଦ ନ ହେବାରୁ ରାଜ୍ୟସାରା ପୁଣି ମଶାଲ ଶୋଭାଯାତ୍ରା, ସଭାସମିତି ଓ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନେଇ କଳାପତାକା ପ୍ରଦର୍ଶନ ଆରମ୍ଭ ହୋଇଗଲା। ଭାଷା ସୁରକ୍ଷା ସମ୍ମିଳନୀର ଅନୁରୋଧ କ୍ରମେ ବିରୋଧୀ ଦଳର ସଦସ୍ୟମାନେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଦାବୀକରି ବିଧାନସଭାକୁ ଦୁଇଦିନ ଅଚଳ କରିଦେଲେ। ସରକାର ଶେଷକୁ ବାଧ ହେଲେ ଭାଷା ଆଇନରେ ସଂଶୋଧନୀ ଆଣି ନିୟମାବଳୀ ପ୍ରଣୟନ କରିବାକୁ। କିନ୍ତୁ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ସଂପର୍କରେ ସରକାରଙ୍କର ଅସ୍ପଷ୍ଟ ଧାରଣା, ଇଚ୍ଛାଶକ୍ତିର ଅଭାବ ହେତୁ ପ୍ରଣୀତ ନିୟମାବଳୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପରିବର୍ତ୍ତେ ଏହାକୁ ବିଫଳ କରିବା ପାଇଁ ଉଦ୍ଦିଷ୍ଟ ଥିଲା। ଭାଷା ଆନ୍ଦୋଳନର ମୁଖ୍ୟ ଦାବୀ ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନକୁ ସରକାର ପ୍ରତ୍ୟାଖ୍ୟାନ କରି ଭାଷା ଆଇନକୁ ଏକ ଅଧପନ୍ତରିଆ ଆଇନରେ ପରିଣତ କରିଦେଲେ। ଏହି ଆଇନ କିପରି କାର୍ଯ୍ୟକାରୀ ହେଉଛି ତା'ର ତଦାରଖ ଦାୟିତ୍ୱ ଅର୍ପଣ କରିଦେଲେ ସେଇ ଅମଲାମାନଙ୍କ ଉପରେ ଯେଉଁମାନେ ଏହାକୁ କାର୍ଯ୍ୟକାରୀ କରିବେ। ଫଳରେ

ଓଡ଼ିଆରେ ଶାସନ ପାଇଁ ଓଡ଼ିଆଙ୍କ ମନରେ ଯେଉଁ ଆଶା ସୃଷ୍ଟି ହୋଇଥିଲା ତାହା ଚୂରମାର ହୋଇଗଲା ।

ସରକାର ଭୁଲିଗଲେ, ୧୯୫୪ରେ ନବକୃଷ୍ଣ ଚୌଧୁରୀ ଏବଂ ପରବର୍ତ୍ତୀ ସମୟରେ ଜାନକୀବାବୁ ସରକାରୀ ସ୍ତରରେ ଓଡ଼ିଆ ଭାଷା ବ୍ୟବହାରର ତଦାରଖି କରିବା ଦାୟିତ୍ୱ ଏକ କ୍ଷମତାସମ୍ପନ୍ନ ଆୟୋଗ ଉପରେ ନ୍ୟସ୍ତ କରିଥିଲେ ତାଙ୍କ ପରେ ଏବେବି ଓଡ଼ିଶାର ଶାସନ ଓଡ଼ିଆରେ ଚାଲୁଥା'ନ୍ତା । ଅତୀତର ଅଭିଜ୍ଞତାରୁ ସରକାର କିଛି ଶିଖିଲେ ନାହିଁ କି କେନ୍ଦ୍ର ସରକାରଙ୍କ ରାଷ୍ଟ୍ରଭାଷା ଆୟୋଗ ଓ ଆନ୍ଧ୍ର, କର୍ଣ୍ଣାଟକ, ମହାରଷ୍ଟ୍ର ଆଦି ସରକାରଙ୍କ ଭାଷା ଆୟୋଗ ଢାଂଚାରେ ଓଡ଼ିଶା ଭାଷା ଆୟୋଗ ଗଠନ କଲେନାହିଁ । ଧର୍ମକୁ ଆଖିଠାର ମାରିଲା ପରି ଭାଷା ଆଇନକୁ କାର୍ଯ୍ୟକାରି କରିବା ଦାୟିତ୍ୱ ଜଣେ ଯୁଗ୍ମ ସଚିବଙ୍କ ଅଧକ୍ଷତାରେ ଗଠିତ ଏକ ଭାଷା ବିଭାଗ ଉପରେ ଛାଡ଼ିଦେଲେ । ସରକାରୀ କାର୍ଯ୍ୟରେ ଓଡ଼ିଆ ଭାଷା କିପରି ବ୍ୟବହୃତ ହେଉଛି ତା'ର ସମୀକ୍ଷା ୬ ମାସରେ ଥରେ କରିବା ଦାୟିତ୍ୱ ସେଇ ଅମଲାତନ୍ତ୍ରର ମୁଖ୍ୟଶାସନ ସଚିବଙ୍କୁ ଦେଇଦେଲେ । ପ୍ରଶ୍ନ ଉଠୁଛି ମୁଖ୍ୟଶାସନ ସଚିବ ଆଇନର ଉଲ୍ଲଂଘନ କଲେ ତାଙ୍କ ବିରୋଧରେ କିଏ ପ୍ରଶ୍ନ ଉଠାଇବ । ତେଣୁ ଭାଷା ଆଇନକୁ କାର୍ଯ୍ୟକାରୀ କରିବାକୁ ହେଲେ ଅମଲାତନ୍ତ କାର୍ଯ୍ୟକୁ ତଦାରଖ କରିବା ଲାଗି ଏକ ସ୍ୱତନ୍ତ୍ର କ୍ଷମତାସଂପନ୍ନ ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନର ବ୍ୟବସ୍ଥା ଏକାନ୍ତ ଆବଶ୍ୟକ । ଏହି ଆୟୋଗ ପରିତ୍ୟକ୍ତ ରାଜନେତାମାନଙ୍କର ଥଇଥାନ ସ୍ଥଳୀ ନହୋଇ ଭାଷାପ୍ରେମୀ ଆଇନଜ୍ଞ, ଭାଷାବିତ୍, ଅବସରପ୍ରାପ୍ତ ବରିଷ୍ଠ ପ୍ରଶାସକ ଓ ଅଭିଜ୍ଞ ସାମ୍ବାଦିକଙ୍କୁ ନେଇ ଗଠିତ ହେବ । ଏହା ଅମଲାତନ୍ତ୍ରର ଅଧୀନରେ ନ ରହି ଭାଷା ଆଇନର କାର୍ଯ୍ୟକାରିତାକୁ ତଦାରଖ କରିବା ସହିତ ଶାସନରେ ଓଡ଼ିଆ ଭାଷାର ପ୍ରୟୋଗକୁ ତ୍ୱରାନ୍ୱିତ କରିବା ପାଇଁ ସରକାରଙ୍କୁ ସୁପାରିଶ କରିବ । ଆୟୋଗର ବିବରଣୀ ସରକାରଙ୍କ ଜରିଆରେ ବିଧାନସଭାରେ ଉପସ୍ଥାପିତ ହେବ ଓ ତା' ଉପରେ ଆଲୋଚନା କରାଯିବ । କିନ୍ତୁ ଏହା ସ୍ୱଷ୍ଟ ଯେ ଅମଲାତନ୍ତ୍ର ଜାଣିଶୁଣି ଭାଷା ଆୟୋଗ ଗଠନ କରିବାକୁ ଚାହୁଁ ନାହାନ୍ତି । ଆୟୋଗ ଗଠିତ ହେଲେ ଭାଷା ଆଇନକୁ ପଙ୍ଗୁ କରିଦେବା ପାଇଁ ସେମାନଙ୍କ କାରସାଦି ପୂର୍ବପରି ଫଳପ୍ରଦ ହେବ ନାହିଁ । କିନ୍ତୁ ଭାଷା ଆୟୋଗ ଗଠନ ନହେଲେ ଭାଷା ଆଇନ କେବଳ ଏକ ସରକାରୀ ଭେଳିକି ବା ଧୂଆଁବାଣ ହୋଇ ରହିଯିବ ।

ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନର ବ୍ୟବସ୍ଥା କରିବା ଦାବୀରେ ମଧୁବାବୁଙ୍କ ଜନ୍ମଦିନ ଗତ ଏପ୍ରିଲ ୨୮ ତାରିଖରେ 'ଭାଷା ସୁରକ୍ଷା ସମ୍ମିଳନୀ'

ପକ୍ଷରୁ ଭୁବନେଶ୍ୱର ସମେତ ରାଜ୍ୟର ସମସ୍ତ ଜିଲ୍ଲାପାଳ ଓ ଉପଜିଲ୍ଲାପାଳଙ୍କ ଅଫିସ ସମ୍ମୁଖରେ ଧାରଣା ଦିଆଯାଇଥିଲା । ଏଥିରେ ହଜାର ହଜାର ଲୋକ ଯୋଗଦେଇ ରାଜ୍ୟପାଳଙ୍କ ନିକଟକୁ ଦାବୀପତ୍ର ପ୍ରେରଣ କରିଥିଲେ । ଭୁବନେଶ୍ୱରଠାରେ ଅନୁଷ୍ଠିତ ଧାରଣା ପକ୍ଷରୁ ବିଶିଷ୍ଟ ବୁଦ୍ଧିଜୀବୀ, ଲେଖକ, ପୂର୍ବତନ ପ୍ରଶାସକ ଓ ପୂର୍ବତନ ବିଚାରପତିମାନେ ରାଜ୍ୟପାଳଙ୍କୁ ମଧ୍ୟ ଦାବୀପତ୍ର ପ୍ରଦାନ କରିଥିଲେ । ଭୁବନେଶ୍ୱରରେ କଳାପତାକା ପ୍ରଦର୍ଶନ ଅଭିଯାନ ମଧ୍ୟ ଚାଲିଛି । ରାଜ୍ୟପାଳ ଏ ଦିଗରେ ପଦକ୍ଷେପ ନେବାପାଇଁ ସରକାରଙ୍କୁ ପରାମର୍ଶ ଦେଇଛନ୍ତି ବୋଲି ଜାଣିବାକୁ ମିଳିଛି । ସରକାର ଯଦି ପ୍ରକୃତରେ ଚାରିକୋଟି ଓଡ଼ିଆଙ୍କର ଆବେଗକୁ ସମ୍ମାନ ଦେଉଥା'ନ୍ତି ତେବେ ଏକ ଅଡିନାନ୍ସ ଜରିଆରେ ମୂଳ ଆଇନରେ ଏକ ସଂଶୋଧନୀ ଆଣି ଭାଷା ଆୟୋଗ ଗଠନକୁ ଆଇନର ଅନ୍ତର୍ଭୁକ୍ତ କରି ଦଣ୍ଡବିଧାନର ବ୍ୟବସ୍ଥା କରନ୍ତୁ ।



# ଓଡ଼ିଆରେ ଶାସନ ପାଇବାକୁ ଆମେ କ'ଣ ହକ୍‌ଦାର୍ ନୁହଁନ୍ତି

ନିଜ ମାତୃଭାଷାରେ ଶାସନ, ଶିକ୍ଷାଲାଭ କରିବା ପ୍ରତ୍ୟେକ ଜାତିର ଜନ୍ମଗତ ଗଣତାନ୍ତ୍ରିକ ଅଧିକାର। ଏହି ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ପରାଧୀନ ଜାତିମାନଙ୍କୁ ଅନେକ ସଂଗ୍ରାମ କରିବାକୁ ପଡ଼ିଛି। ଆମ ସ୍ୱାଧୀନତା ସଂଗ୍ରାମ ବେଳେ ବିଦେଶୀ ଶାସନରୁ ନିଜକୁ ମୁକ୍ତ କରିବା ସହିତ ଆମ ଭାଷାରେ ଶାସନ ଚଳାଇବା ପାଇଁ ସଂଗ୍ରାମ କରିବାକୁ ପଡ଼ିଥିଲା। ସ୍ୱାଧୀନତା ପରେ ଭାରତର ବିଭିନ୍ନ ରାଜ୍ୟରେ ନିଜ ଭାଷାରେ ଶାସନ ପ୍ରତିଷ୍ଠା ପାଇଁ ଭାଷା ଆଇନ ସବୁ ପାରିତ ହେଲା। ଓଡ଼ିଶାରେ ନବକୃଷ୍ଣ ଚୌଧୁରୀ ୧୯୫୪ରେ ଓଡ଼ିଶା ସରକାରୀ ଭାଷା ଆଇନ ପ୍ରଣୀତ କରିଥିଲେ ଓଡ଼ିଶାରେ ଓଡ଼ିଆ ଭାଷାରେ ଶାସନ ପ୍ରତିଷ୍ଠା ପାଇଁ। କିନ୍ତୁ ନବବାବୁଙ୍କ ପରେ ଯେଉଁମାନେ କ୍ଷମତାକୁ ଆସିଲେ ସେମାନେ ସେ ଆଇନକୁ କାର୍ଯ୍ୟକାରୀ କଲେ ନାହିଁ କି ଆମ ମାତୃଭାଷାକୁ ସମ୍ମାନ ଦେଲେ ନାହିଁ। ଜାନକୀ ବାବୁ ଦୁଇଥର ଉଦ୍ୟମ କରି କିଛି ସଫଳ ହୋଇଥିଲେ। କିନ୍ତୁ ତାଙ୍କ ପରେ ପୁଣି ପ୍ରଶାସନ, କୋର୍ଟକଚେରୀ, ବ୍ୟବସାୟ ବାଣିଜ୍ୟର କାର୍ଯ୍ୟ ଇଂରେଜୀରେ ଚାଲିଲା। ବର୍ତ୍ତମାନ ଏପରି ଅବସ୍ଥା ହୋଇଛି

ଯେ ଏହିସବୁ କ୍ଷେତ୍ରରେ ଓଡ଼ିଆ ଭାଷା ଲୋପ ପାଇବାକୁ ବସିଲାଣି ଏବଂ ଏହାର ପ୍ରଭାବ ଆମର ସାହିତ୍ୟ, ସାମାଜିକ ଜୀବନ, ଶିକ୍ଷା ବ୍ୟବସ୍ଥା ଏବଂ ଗଣମାଧ୍ୟମ ଉପରେ ଗଭୀର ଭାବେ ପଡୁଛି। ଓଡ଼ିଆ ଭାଷା ଜୀବିକାର ଭାଷା ହୋଇନଥିବାରୁ ଓଡ଼ିଆ ପିଲାଏ ଓଡ଼ିଆ ପଢ଼ିବାକୁ ଆଗ୍ରହୀ ନୁହନ୍ତି। ଓଡ଼ିଆ ମାଧ୍ୟମ ସ୍କୁଲମାନଙ୍କରେ ଓଡ଼ିଆ ଶିକ୍ଷକ ପଦବୀ ନଥିବାରୁ ଓଡ଼ିଆ ପଢ଼ାଇବାକୁ ଓଡ଼ିଆ ଶିକ୍ଷକ ନାହାନ୍ତି। ଉଚ୍ଚଶିକ୍ଷା କ୍ଷେତ୍ରରେ ଓଡ଼ିଆ ଶିକ୍ଷା ପ୍ରତି ଅବହେଳା ସର୍ବତ୍ର ଦେଖିବାକୁ ମିଳୁଛି। ଅନ୍ୟଦିଗରେ ଓଡ଼ିଶାର ୯୦%ରୁ ଅଧିକ ଲୋକ ଇଂରେଜୀରେ ଲେଖିପଢ଼ି ଜାଣନ୍ତି ନାହିଁ। ସେପରି ସ୍ଥଳେ ଶାସନ, ନ୍ୟାୟାଳୟ ଓ ବ୍ୟବସାୟ ବାଣିଜ୍ୟ କାର୍ଯ୍ୟ ଇଂରେଜୀରେ ଚାଲୁଥିବା ହେତୁ ଲୋକେ ଦୁର୍ନୀତି ଓ ପ୍ରତାରଣାର ଶୀକାର ହେଉଛନ୍ତି। ଲୋକଙ୍କ ସହିତ ଶାସନର ପ୍ରତ୍ୟକ୍ଷ ସଂପର୍କ ରହୁନାହିଁ।

ଓଡ଼ିଆ ଭାଷା ହେଉଛି ଆମର ପରିଚୟ, ଆମର ସ୍ୱାଭିମାନର ପ୍ରତୀକ। ତେଣୁ ମାତୃଭାଷାର ଏହି ଦୁର୍ଗତିକୁ ଲକ୍ଷ୍ୟକରି ଓଡ଼ିଆମାନଙ୍କୁ ଏ ସଂପର୍କରେ ସଚେତନ କରିବା ନିମିତ୍ତ ଗତ ଛଅ ବର୍ଷ ପୂର୍ବେ ଭାଷା ସୁରକ୍ଷା ସମ୍ମିଳନୀ ନେତୃତ୍ୱରେ ଓଡ଼ିଶାରେ ଏକ 'ଭାଷା ସୁରକ୍ଷା' ଆନ୍ଦୋଳନ ଆରମ୍ଭ ହୋଇଥିଲା। ଲୋକଙ୍କ ମଧ୍ୟରେ ଓଡ଼ିଆ ଜାତୀୟତାବୋଧ ଜାଗ୍ରତ କରିବା ସହିତ ରାଜ୍ୟ ସରକାରଙ୍କ ପାଖରେ ଦାବୀ କରାଯାଇଥିଲା ତୁରନ୍ତ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକୀୟ ନିୟମାବଳୀ ପ୍ରଣୟନ କରିବାକୁ। କାରଣ ଭାଷା ଆଇନ କାର୍ଯ୍ୟକାରୀ ନହେଲେ ଓଡ଼ିଆ ଭାଷା କ୍ରମଶଃ ଲୋପ ପାଇଯିବ ଏବଂ ଓଡ଼ିଶାର ଲୋକେ ନିଜ ମାତୃଭାଷାରେ ଶାସନ ନ୍ୟାୟ ପାଇବାରୁ ଚିରଦିନ ପାଇଁ ବଞ୍ଚିତ ହେବେ। ଭାଷା ସୁରକ୍ଷା ଆନ୍ଦୋଳନକୁ ତୀବ୍ରତର କରି ସରକାରଙ୍କ ଉପରେ ଚାପ ସୃଷ୍ଟି କରିବା ନିମିତ୍ତ ରାଜ୍ୟର ବିଭିନ୍ନ ଜିଲ୍ଲାରେ ସଭା ସମିତି, ସମ୍ମିଳନୀ ଆଦି ଆୟୋଜନ ହୋଇଥିଲା। ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କୁ ଲକ୍ଷେ ପୋଷ୍ଟକାର୍ଡ ଚିଠି ଲେଖିବାଠାରୁ ଆରମ୍ଭ କରି ଜିଲ୍ଲାପାଳମାନଙ୍କ ଦପ୍ତର ଆଗରେ ଧାରଣା, ବିକ୍ଷୋଭ, ରାଜ୍ୟପାଳଙ୍କୁ ଦାବୀ ପତ୍ର ପ୍ରଦାନ, ମଶାଲ ଶୋଭାଯାତ୍ରା, କଳାପତାକା ପ୍ରଦର୍ଶନ ଏବଂ ଆଇନ ଅମାନ୍ୟ ଆନ୍ଦୋଳନ ଆଦି କରାଯାଇଥିଲା।

ଆନ୍ଦୋଳନର ପ୍ରଭାବ ଓଡ଼ିଶା ବିଧାନସଭା ଉପରେ ପଡ଼ିଥିଲା। ଭାଷାପ୍ରେମୀ ବିଧାୟକମାନେ ବିଧାନସଭା ମଧ୍ୟରେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ଦାବି କରି ଗୋଟିଏ ଦିନ ବିଧାନସଭା ଅଚଳ କରିଦେଇଥିଲେ। ସରକାର ବାଧ୍ୟ ହୋଇ ଭାଷା ଆଇନରେ ସଂଶୋଧନ ଆଣି ନୟମାବଳୀ ପ୍ରଣୟନ କଲେ।

କିନ୍ତୁ ଭାଷା ସୁରକ୍ଷା ସମ୍ମିଳନୀ ତଥା ଅନ୍ୟ ସଂଗଠନମାନଙ୍କର ଯେଉଁ ମୂଳ ଦାବି ଥିଲା ତାକୁ ଗ୍ରହଣ କଲେ ନାହିଁ। ମୂଳ ଦାବି ଥିଲା ଭାଷା ଆଇନକୁ ୬୪ବର୍ଷ ପରେ କାର୍ଯ୍ୟକାରୀ କରିବାକୁ ହେଲେ ଅନ୍ୟ ରାଜ୍ୟ ପରି ଓଡ଼ିଶାରେ ଏକ କ୍ଷମତାସଂପନ୍ନ ଭାଷା ଆୟୋଗ ଗଠନ କରାଯାଉ। କାରଣ ଆଇନକୁ କାର୍ଯ୍ୟକାରୀ କରିବାକୁ ବର୍ତ୍ତମାନ ସରକାରଙ୍କ ଅନିଚ୍ଛା ଓ ଉଚ୍ଚ ଅମଲାତନ୍ତ୍ର ବିରୋଧ ହେତୁ ଏକ ଉଚ୍ଚ କ୍ଷମତାସମ୍ପନ୍ନ ବା ଷ୍ଟାଚ୍ୟୁଟାରୀ ବଡ଼ିର ତଦାରଖ, ମୂଲ୍ୟାୟନ ଓ ସହାୟତା ବିନା ଆଇନକୁ କାର୍ଯ୍ୟକାରୀ କରିବା ସମ୍ଭବ ହେବନାହିଁ। କିନ୍ତୁ ସରକାର ଓଡ଼ିଶାବାସୀଙ୍କ ଦାବୀକୁ ଅଗ୍ରାହ୍ୟ କରି ସରକାରୀ ଭାଷା ଆୟୋଗ ଗଠନ କଲେନାହିଁ, ଜଣେ ସରକାରୀ ଯୁଗ୍ମ ସଚିବଙ୍କ ଅଧ୍ୟକ୍ଷତାରେ ଏକ 'ଭାଷା ଡିଭିଜନ' ଗଠନ କରିଦେଲେ। ଏହା ଥିଲା ଭାଷା ଆଇନକୁ କାର୍ଯ୍ୟକାରୀ କରାଇ ନଦେବା ପାଇଁ ସରକାରଙ୍କର ଏକ ସୁଚତୁର ଧୂଆଁବାଣ। ଯାହା ଫଳରେ ୨୦୧୬ ଅଗଷ୍ଟ ୧୬ରୁ ଆଇନ କାର୍ଯ୍ୟକାରୀ ହେଉଛି ବୋଲି ସରକାରଙ୍କ ଘୋଷଣା ସତ୍ତ୍ୱେ ଗତ ବର୍ଷେ ୧୦ମାସ ମଧ୍ୟରେ ସରକାରୀ କଳରେ ଓଡ଼ିଆରେ ଫାଇଲଟିଏ ହେଲା ନାହିଁ କି ଓଡ଼ିଶାର ନ୍ୟାୟାଳୟମାନଙ୍କରେ (ଜିଲ୍ଲା କୋର୍ଟ ପର୍ଯ୍ୟନ୍ତ) ବିଚାରପତିମାନେ ଓଡ଼ିଆରେ ସେମାନଙ୍କର ରାୟଟିଏ ଲେଖିଲେ ନାହିଁ।

ସରକାରଙ୍କର ଏତାଦୃଶ ଛଳନା ବିରୋଧରେ ଭାଷା ସୁରକ୍ଷା ସମ୍ମିଳନୀ ତା'ର ରାଜ୍ୟବ୍ୟାପୀ ଆଇନ ଅମାନ୍ୟ ଆନ୍ଦୋଳନ ଜାରି ରଖିଥିଲା। ବିଭିନ୍ନ ରାଜନୈତିକ ଦଳର ନେତା, କର୍ମୀ, ବୁଦ୍ଧିଜୀବୀ, ଲେଖକ, ସାହିତ୍ୟିକ ଏଥିରେ ହଜାର ହଜାର ସଂଖ୍ୟାରେ ଯୋଗଦେଇଥିଲେ। ଶେଷକୁ ସରକାର ଲୋକମାନଙ୍କୁ ବିଭ୍ରାନ୍ତ କରିବା ପାଇଁ ଆଉ ଏକ ଛଳନାର ଆଶ୍ରୟ ନେଇ ଘୋଷଣା କଲେ ଶିଳ୍ପ ବାଣିଜ୍ୟ ଦପ୍ତରରେ ଓଡ଼ିଆ ଭାଷାରେ ନାମଫଳକ ଆଦି ଲେଖାଇବେ। ଯେଉଁମାନେ ନକରିବେ ସେମାନଙ୍କୁ ଦଣ୍ଡବିଧାନ କରିବେ। ବ୍ୟବସାୟ ବାଣିଜ୍ୟ ପ୍ରତିଷ୍ଠାନ ଉପରେ ନିର୍ଦ୍ଦିଷ୍ଟ ଅର୍ଥଦଣ୍ଡର ପରିମାଣ ଘୋଷଣା କରିଦେଲେ। କିନ୍ତୁ ପ୍ରଶାସନରେ ଏହି ଆଇନକୁ କିପରି କାର୍ଯ୍ୟକାରୀ କରାଯିବ ଓ ଯେଉଁ ଅଧିକାରୀମାନେ କାର୍ଯ୍ୟକାରୀ କରିବେ ନାହିଁ ସେମାନଙ୍କ ପ୍ରତି କି ଦଣ୍ଡ ବିଧାନ ହେବ ତାହା ପ୍ରକାଶ କଲେ ନାହିଁ। ସରକାର ଏହି ଘୋଷଣାକୁ ଗଣମାଧ୍ୟମରେ ଚତୁରତାର ସହିତ ଅତିମାତ୍ରାରେ ପ୍ରଚାର କରି ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସରକାରୀ ଭାଷା ଆୟୋଗ ଗଠନ ବିଷୟକୁ ଏଡାଇଗଲେ। ଫଳକ ଲେଖା ଓ ଦଣ୍ଡବିଧାନ ଘୋଷଣାଟିକୁ ପଢ଼ି କିଛି ଲୋକ ଭାବିଲେ ସରକାର ଭାଷା ଆଇନ କାର୍ଯ୍ୟକାରୀ କରିବା ଦାବୀକୁ ମାନିନେଲେ। ସେମାନେ ବୁଝିଲେ

ନାହିଁ ଯେ ସରକାରଙ୍କ ନାମ ଫଳକ ଲେଖା ଓ ଦଣ୍ଡବିଧାନ ଘୋଷଣା ଥିଲା ଆମକୁ ବୋକା ବନେଇବା ପାଇଁ ଏକ ଫିକର। କାରଣ ନାମଫଳକ ଓଡ଼ିଆରେ ଲେଖିଦେଲେ ପ୍ରଶାସନ, କୋର୍ଟକଚେରୀ, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଓଡିଆରେ ଶାସନ ଚାଲୁ ହୋଇଯିବ ବୋଲି ଭାବିବାଟା ବୋକାମୀ ଛଡ଼ା ଆଉ କ'ଣ ହୋଇପାରେ? ଭାଷା ଆଇନକୁ କାର୍ଯ୍ୟକାରୀ କରିବାକୁ ହେଲେ ସେଥିପାଇଁ ବିରାଟ ପ୍ରସ୍ତୁତି, ପ୍ରଶିକ୍ଷଣ, ଭିତ୍ତିଭୂମି ସୃଷ୍ଟି, ଅଧିକାରୀ ଓ କର୍ମଚାରୀମାନଙ୍କୁ ପ୍ରୋତ୍ସାହାନ ଏବଂ ଦଣ୍ଡବିଧାନ ଆଦିର ବ୍ୟବସ୍ଥା ଆବଶ୍ୟକ। ଏସବୁର ଆୟୋଜନ କିଏ କରିବ ଏବଂ ଓଡ଼ିଆରେ କାର୍ଯ୍ୟ ହେଉଛି କି ନାହିଁ ତା'ର ତଦାରଖ, ମୂଲ୍ୟାଙ୍କନ ଓ ପରାମର୍ଶ ଆଦି କିଏ ଦେବ? ଆଇନରେ ଦଣ୍ଡବିଧାନର ବ୍ୟବସ୍ଥା ରଖିଦେଲେ ତାହା କାର୍ଯ୍ୟକାରୀ ହୋଇଯାଏ ନାହିଁ। ତାହାକୁ କାର୍ଯ୍ୟାୟନ କରିବା ପାଇଁ ସ୍ୱତନ୍ତ୍ର କର୍ତ୍ତୃତ୍ୱସଂପନ୍ନ ସଂସ୍ଥାର ଆବଶ୍ୟକତା ରହିଥାଏ। ତେଣୁ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଏକ ଉଚ୍ଚକ୍ଷମତା ସଂପନ୍ନ ଆୟୋଗ ଗଠନ ଏକାନ୍ତ ଆବଶ୍ୟକ। ଏହା ଓଡ଼ିଆ ଭାଷା ସାହିତ୍ୟ ପ୍ରତି ସମର୍ପିତ ଭାଷାବିତ୍, ସାହିତ୍ୟିକ, ପୂର୍ବତନ ପ୍ରଶାସକ, ଆଇନଜ୍ଞ, କମ୍ପ୍ୟୁଟର ବିଶେଷଜ୍ଞ, ସରକାରଙ୍କ ଆଇନ ସଚିବଙ୍କୁ ନେଇ ଗଠିତ ହେବ।

କିନ୍ତୁ ଓଡ଼ିଆ ବିରୋଧୀ କେତେକ ପ୍ରଭାବଶାଳୀ ଅଧିକାରୀଙ୍କର ଉଦ୍ଦେଶ୍ୟ ହେଉଛି ସଂପୂର୍ଣ୍ଣ ଭିନ୍ନ। ସେମାନେ ବ୍ୟୁରୋକ୍ରାସି ବା ଅମଲାତନ୍ତ୍ର ଉପରେ ଏକ ଉଚ୍ଚକ୍ଷମତା ସଂପନ୍ନ ଆୟୋଗ ଗଢ଼ିବାକୁ ଚାହାନ୍ତି ନାହିଁ। କାରଣ ଏହି ସଂସ୍ଥା ଗଠିତ ହେଲେ ଭାଷା ଆଇନକୁ ସବୁ କ୍ଷେତ୍ରରେ କାର୍ଯ୍ୟକାରୀ କରିବା ପାଇଁ ଅମଲାତନ୍ତ୍ରକୁ ଏହା ବାଧ୍ୟ କରିବ। ତେଣୁକରି ସେମାନେ ସରକାରୀ ଭାଷା ଆୟୋଗ ଗଠନ କରିବାକୁ ଡରୁଛନ୍ତି। ଅଥଚ ଭାଷା ଆୟୋଗ ଗଠିତ ହେଲେ ଭାଷା ଆଇନର କାର୍ଯ୍ୟାନ୍ୱୟନ ସହଜ ହେବ। ଭାଷା ଆଇନକୁ କାର୍ଯ୍ୟକାରୀ କରିବାରେ ଆୟୋଗ ପ୍ରମୁଖ ଭୂମିକା ନେବ। କିନ୍ତୁ ସରକାରଙ୍କର ଅସଲ ଉଦ୍ଦେଶ୍ୟ ହେଉଛି ସରାକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରାଇ ନଦେବା। ନବକୃଷ୍ଣ ଚୌଧୁରୀ ଏବଂ ଜାନକୀ ବାବୁଙ୍କ ବେଳେ କେତେକ ଉଚ୍ଚ ଅଫିସର ଆଇନକୁ ବିରୋଧ କରୁଥିଲେ। କିନ୍ତୁ ନବବାବୁ ଓ ଜାନକୀ ବାବୁଙ୍କ ଦୃଢ଼ ଇଚ୍ଛାଶକ୍ତି, ଭାଷାପ୍ରୀତି ଆଗରେ ସେମାନଙ୍କୁ କାର୍ଯ୍ୟ କରିବାକୁ ପଡ଼ିଥିଲା। ବର୍ତ୍ତମାନର ସ୍ଥିତି କିନ୍ତୁ ଭିନ୍ନ। ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓଡ଼ିଆ ନ ଜାଣିବା ଏବଂ ଶାସନରେ ଥିବା ଓଡ଼ିଆ ମନ୍ତ୍ରୀ ଓ ନେତାମାନଙ୍କର ଭାଷାପ୍ରୀତି ଓ ସ୍ୱାଭିମାନର ଅଭାବକୁ ଅମଲାତନ୍ତର ଏକ ପ୍ରଭାବଶାଳୀ ଅଂଶ ଢାଲ ରୂପେ ବ୍ୟବହାର କରୁଛନ୍ତି। ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପରିବର୍ତ୍ତେ ଓଡ଼ିଆ ଭାଷା

ସାହିତ୍ୟର ପ୍ରସାର ପ୍ରଚାର ପାଇଁ ବିଭିନ୍ନ ଅନାବଶ୍ୟକ କାର୍ଯ୍ୟକ୍ରମମାନ ଘୋଷଣା କରୁଛନ୍ତି। ଏହା ଦ୍ୱାରା ସେମାନେ ଦୀର୍ଘ ୬୪ ବର୍ଷ ପରେ ଓଡ଼ିଶାରେ ଓଡ଼ିଆରେ ଶାସନ ପାଇଁ ରାଜ୍ୟସାରା ଗଢ଼ିଉଠିଥିବା ଭାଷା ଆନ୍ଦୋଳନକୁ ଭଣ୍ଡୁର କରିବା ସହିତ ଲୋକଙ୍କୁ ବିଭ୍ରାନ୍ତ କରିବାକୁ ଚାହୁଁଛନ୍ତି।

ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ବିରୋଧରେ ଏହିଭଳି ଏକ ଷଡଯନ୍ତ୍ର ଚାଲିଥିଲା ବେଳେ ଚାରିକୋଟି ଓଡ଼ିଆ କ'ଣ ସରକାରଙ୍କର ମିଥ୍ୟା ପ୍ରଚାର ଓ ପ୍ରତାରଣାରେ ଭୁଲିଯିବେ ନା ନିଜ ମାତୃଭାଷାର ସମ୍ମାନ, ସୁରକ୍ଷା ଓ ନିଜର ହକ୍ ପାଇଁ ଆଗକୁ ଲଢ଼େଇ କରିବେ ? ଭାଷାପ୍ରାଣ କବି ଗଙ୍ଗାଧରଙ୍କ ଭାଷାରେ ମାତୃଭାଷା, ମାତୃଭୂମି ପ୍ରତି ମମତାହୀନ ହୋଇ ପୁଣି ଅଜ୍ଞାନର ନିଦ୍ରାରେ ଯଦି ଆମେ ଶୋଇ ପଡ଼ିବା ତେବେ ଆମ ନିଦ୍ରା ଭାଙ୍ଗିଲା ବେଳକୁ ଓଡ଼ିଆ ଭାଷା ନଥିବ ଓ ଓଡ଼ିଆ ଜାତି ପରିଚୟ ହୀନ ହୋଇପଡ଼ିଥିବ। ତେଣୁ ଏ ଜାତିର କୁଳବୃଦ୍ଧଙ୍କ ଅମର ଆହ୍ୱାନ- "ମାତୃଭାଷା ପାଇଁ ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର ସ୍ୱାର୍ଥକୁ ଦିଅ ଆହୁତି..." କଥା ସ୍ମରଣ କରି ଓଡ଼ିଆମାନଙ୍କ ମଧ୍ୟରେ ଆଉଥରେ ଜାତୀୟ ଜାଗରଣ ପୁଣି ସୃଷ୍ଟି କରିବାକୁ ହେବ। ଦୁନିଆ ଆଗରେ ପ୍ରମାଣ କରିବାକୁ ହେବ ଯେ, ଆମେ ଅନ୍ୟମାନଙ୍କ ପରି ନିଜ ଭାଷାରେ ଶାସନ ଓ ନ୍ୟାୟ ପାଇବାକୁ ହକ୍‌ଦାର୍। ଏହା କେବଳ ଆମର ଜନ୍ମଗତ ହକ୍ ନୁହେଁ ସାମ୍ବିଧାନିକ ଅଧିକାର ମଧ୍ୟ। ତାହା କରି ନ ପାରିଲେ ଇତିହାସ ଆମକୁ କ୍ଷମା ଦେବନାହିଁ।



# ମାତୃଭାଷାରେ ଶାସନ ପାଇଁ ଅନ୍ଦୋଳନ ଅତ୍ୟନ୍ତ ଜରୁରୀ

୧୯୫୪ ଓଡ଼ିଶା ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରି ଓଡ଼ିଆ ଭାଷାକୁ ରାଜଭାଷାର ସମ୍ମାନ ଦେବା ସହିତ ଓଡ଼ିଶାବାସୀଙ୍କୁ ଓଡ଼ିଆ ଭାଷାରେ ଶାସନ ଓ ନ୍ୟାୟ ଦେବା ପାଇଁ ଆମେ ଗତ ୬ବର୍ଷ ଧରି ରାଜ୍ୟବ୍ୟାପୀ ଆନ୍ଦୋଳନ କରି ଆସିଛେ। 'ଭାଷା ସୁରକ୍ଷା ସମ୍ମିଳନୀ'ର ନେତୃତ୍ୱରେ ପରିଚାଳିତ ଏହି ଆନ୍ଦୋଳନରେ ରାଜ୍ୟର ଅନେକ ଭାଷାପ୍ରେମୀ ସଂଗଠକ ଅଂଶଗ୍ରହଣ କରିଛନ୍ତି। ବୁଦ୍ଧିଜୀବୀ, ଲେଖକ, ସାହିତ୍ୟିକ, ଯୁବକ ଛାତ୍ରମାନେ ମୁଖ୍ୟମନ୍ତ୍ରୀଙ୍କୁ ଲକ୍ଷାଧିକ ପୋଷ୍ଟକାର୍ଡ ଲେଖିଛନ୍ତି। ସଭାସମିତି, ସମ୍ମିଳନୀ, ଧାରଣା, ବିକ୍ଷୋଭ, ମଶାଲ ଶୋଭାଯାତ୍ରା, କଳାପତକା ପ୍ରଦର୍ଶନ ଏବଂ ଆଇନ ଅମାନ୍ୟ ଆନ୍ଦୋଳନ କରି ଗିରଫ ହୋଇଛନ୍ତି। ଅନେକ ବର୍ଷ ପରେ ଏହି ରାଜ୍ୟବ୍ୟାପୀ ଆନ୍ଦୋଳନ ସୁପ୍ତ ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟ ଚେତନା, ସ୍ୱାଭିମାନ ଏବଂ ଦେଶପ୍ରେମ କିଛି ପରିମାଣରେ ପୁନଃ ଜାଗ୍ରତ କରିବା ପାଇଁ ସକ୍ଷମ ହୋଇଛି। କିନ୍ତୁ ରାଜ୍ୟ ସରକାର ଏହି ଆନ୍ଦୋଳନକୁ ୪କୋଟି ଓଡ଼ିଆଙ୍କ ଗଣତାନ୍ତ୍ରିକ ଅଧିକାରକୁ ସାବ୍ୟସ୍ତ କରିବାର ଆନ୍ଦୋଳନ ହିସାବରେ ନ ଦେଖି ଏକ

ସରକାର ବିରୋଧୀ ଆନ୍ଦୋଳନ ହିସାବରେ ଦେଖୁଛନ୍ତି। ଆନ୍ଦୋଳନକୁ ବିଭ୍ରାନ୍ତ କରିବା ପାଇଁ ନାନା ପ୍ରକାର ଫନ୍ଦିଫିକରର ଆଶ୍ରୟ ନେଇଛନ୍ତି। ଦୀର୍ଘ ୧୮ ବର୍ଷ ମଧ୍ୟରେ ପ୍ରଶାସନ, ନ୍ୟାୟାଳୟ, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଓଡ଼ିଆକୁ ଲୋପ କରି ଇଂରେଜୀରେ ଶାସନ କରୁଥିବା ରାଜ୍ୟର ପ୍ରଭାବଶାଳୀ ଅମଲାତନ୍ତ୍ର ଓଡ଼ିଆକୁ ପୁଣି ଶାସନର ଭାଷା କରିବାକୁ ଚାହାନ୍ତି ନାହିଁ। ସେମାନଙ୍କର ଆମ ମାତୃଭାଷା ପ୍ରତି ସମ୍ମାନ ନାହିଁ। ଦୀର୍ଘ ୧୮ ବର୍ଷ ମଧ୍ୟରେ ଓଡ଼ିଆରେ ଲେଖିବା ପଢ଼ିବାକୁ ସେମାନେ ଭୁଲିଗଲେଣି। ସରକାରଙ୍କର ଇଚ୍ଛାଶକ୍ତିର ଅଭାବ ସେମାନଙ୍କୁ ଏ ଦିଗରେ ସୁଯୋଗ ଯୋଗାଇଛି। ୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଭାରତର ଅନ୍ୟ ରାଜ୍ୟମାନଙ୍କ ପରି ଏକ ଅର୍ଦ୍ଧନ୍ୟାୟିକ କ୍ଷମତାସଂପନ୍ନ ସଂସ୍ଥା ବା ଷ୍ଟାଚ୍ୟୁଟାରି ବଡ଼ି ଗଠନ କରିବା ନିମିତ୍ତ ଭାଷା ଆନ୍ଦୋଳନର ଦାବିକୁ ନାନା ଆଳ ଦେଖାଇ ସରକାର ବାରମ୍ବାର ପ୍ରତ୍ୟାଖ୍ୟାନ କରିଛନ୍ତି। କାରଣ ସେମାନେ ଜାଣନ୍ତି ଆୟୋଗ ଗଠନ ହେଲେ ଓ ଦଣ୍ଡବିଧାନର ବ୍ୟବସ୍ଥା ରହିଲେ ରାଜ୍ୟର ଅମଲାତନ୍ତ୍ର ଭାଷା ଆଇନକୁ କାର୍ଯ୍ୟକାରୀ କରିବାକୁ ବାଧ୍ୟ ହେବେ।

ଆନ୍ଦୋଳନର ଚାପରେ ପଡ଼ି ଭାଷା ଆଇନରେ ସଂଶୋଧନ ଆଣି କେତେବେଳେ ସରକାରୀ ଅଧିକାରୀମାନଙ୍କୁ ନେଇ ଭାଷା ଡିଭିଜନ ଗଠନ କରି ଦେଉଛନ୍ତି ତ ଆଉ କେତେବେଳେ ଶିଳ୍ପ ବାଣିଜ୍ୟ ପ୍ରତିଷ୍ଠାନମାନେ ନାମଫଳକ ନ ଲେଖିଲେ ଦଣ୍ଡ ବିଧାନ କରିବାକୁ ଘୋଷଣା କରୁଛନ୍ତି। ଓଡ଼ିଆରେ ନାମଫଳକ ଲେଖିଦେଲେ ଶାସନ ବା ନ୍ୟାୟାଳୟର କାର୍ଯ୍ୟ କ'ଣ ଓଡ଼ିଆରେ ହୋଇଯିବ? ଦଣ୍ଡବିଧାନ ପାଇଁ ଆଇନ କରିଦେଲେ ଯେ ଆଇନ କାର୍ଯ୍ୟକାରୀ ହୋଇଯିବ ବୋଲି ଭାବିବା ଭୁଲ୍। ଆଇନକୁ କାର୍ଯ୍ୟକାରୀ କରିବା, କାର୍ଯ୍ୟକାରୀ ହେଉଛି କି ନାହିଁ ତଦାରଖ କରିବା ଓ ସରକାରଙ୍କୁ ପରାମର୍ଶ ଦେବା ପାଇଁ କର୍ତ୍ତୃତ୍ୱ ଥିବା ଏକ ସଂଗଠନ ଏକାନ୍ତ ଆବଶ୍ୟକ। ତାହା ନକରି ସରକାର ଭାଷା ଆନ୍ଦୋଳନକୁ ଭଣ୍ଡୁର କରିବା ନିମିତ୍ତ ଓଡ଼ିଆ ଭାଷାର ପ୍ରଚାର ପ୍ରସାର ପାଇଁ ଅନେକ କାର୍ଯ୍ୟକ୍ରମ ଘୋଷଣା କରିଛନ୍ତି। କିନ୍ତୁ ଓଡ଼ିଆ ଭାଷା ଓଡ଼ିଶାର ଶାସନର ଭାଷା ଓ ଓଡ଼ିଆମାନଙ୍କ ପାଇଁ ଜୀବିକାର୍ଜ୍ଜନର ଭାଷା ନହେଲେ ଓଡ଼ିଆ ପିଲାଏ କାହିଁକି ଓଡ଼ିଆ ପଢ଼ିବେ? ତେଣୁ ମୂଳ କଥାଟି ହେଉଛି ସରକାର ପ୍ରଥମେ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ନିମିତ୍ତ ଏକ କ୍ଷମତାସଂପନ୍ନ ଆୟୋଗ ଗଠନ କରନ୍ତୁ ଏବଂ ତା' ହାତରେ ଆଇନ ଖିଲାଫକାରୀଙ୍କ ବିରୋଧରେ ଦଣ୍ଡବିଧାନ ପାଇଁ ସୁପାରିଶ କରିବାର ଅଧିକାର ଦିଅନ୍ତୁ। ସରକାର ବଦଳିଲେ ବା ଅଧିକାରୀ

ବଦଳିଲେ ମଧ୍ୟ ସରକାରୀ ଭାଷା ଆୟୋଗ ଭାଷା ଆଇନକୁ ସଠିକ୍ ଭାବେ କାର୍ଯ୍ୟକାରୀ କରିପାରିବ।

ଏହି ଆୟୋଗ ଗଠିତ ହେବ ସରକାରଙ୍କ ଦ୍ୱାରା ମନୋନୀତ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ସମର୍ପିତ, ଦୃଢ଼ମନା ବ୍ୟକ୍ତି, ପ୍ରଶାସନିକ ଅଭିଜ୍ଞତା ସଂପନ୍ନ ପୂର୍ବତନ ଅଧିକାରୀ, ଆଇନଜ୍ଞ ଓ ଭାଷାବିତ୍‌ମାନଙ୍କୁ ନେଇ। ତାହା ନହେଲେ ଭାଷା ସୁରକ୍ଷା ଆନ୍ଦୋଳନ ଚାଲିଥିଲା ପର୍ଯ୍ୟନ୍ତ ସରକାର ମିଥ୍ୟା ପ୍ରତିଶ୍ରୁତି ଓ ମନ ଭୁଲାଣିଆ ଘୋଷଣା ଗୁଡ଼ିଏ କରୁଥିବେ ଏବଂ ଆନ୍ଦୋଳନ ଥମିଗଲେ ଘୋଷଣା ପୁଣି ଘୋଷଣାରେ ରହିଯିବ। ପ୍ରଶାସନ, କୋର୍ଟ କଚେରି, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଲୋପ ପାଇଯାଇଥିବା ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଆଉ କେବେ ହେବ ନାହିଁ କି ଓଡ଼ିଆ ଭାଷା ରାଜଭାଷାର ସମ୍ମାନ ପାଇବ ନାହିଁ। ଏହା ଯଦି ହୁଏ ଏଥିପାଇଁ ସରକାର, ପ୍ରଶାସନିକ ଅଧିକାରୀ ଯେତିକି ଦାୟୀ, ଆମେମାନେ ମଧ୍ୟ ସେତିକି ଦାୟୀ ହେବା। କାରଣ ଆମ ଭାଷାରେ ଶାସନ, ନ୍ୟାୟ ପାଇବା ପାଇଁ ଆମର ଗଣତାନ୍ତ୍ରିକ ଅଧିକାରକୁ ସାବ୍ୟସ୍ତ କରିବା ଓ ମାତୃଭାଷା ପ୍ରତି ଦାୟିତ୍ୱବୋଧକୁ ଆମ ପୂର୍ବସୁରୀମାନଙ୍କ ପରି ପାଳନ କରିବା ନିମିତ୍ତ ଆମେ ଯେତିକି ସଂଗ୍ରାମ ଓ ତ୍ୟାଗ ସ୍ୱୀକାର କରିବାର କଥା ତାହା କରିପାରିନାହାନ୍ତି। ସ୍ୱାଧୀନତା ପରେ ଓଡ଼ିଆମାନେ ଅନେକଥର ପଥ ହୁଡ଼ିଛନ୍ତି। ନବକୃଷ୍ଣ ଚୌଧୁରୀ ଓ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପରେ ଯେଉଁମାନେ ପ୍ରଶାସନ, କୋର୍ଟକଚେରି ଓ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରୁ ଓଡ଼ିଆ ଭାଷାକୁ ଲୋପ କରିଦେଲେ ସେମାନଙ୍କ ବିରୋଧରେ ଆମେ ପ୍ରତିବାଦ କଲେ ନାହିଁ କି ଭାଷା ଆୟୋଗ ଗଠନ କରିବା ପାଇଁ ଦାବୀ କଲେ ନାହିଁ। ତା'ର କୁପରିଣତି ଆଜି ଆମକୁ ଓ ଆମ ଭାଷାକୁ ଭୋଗିବାକୁ ପଡୁଛି। ଦୀର୍ଘ ୬୪ ବର୍ଷ ପରେ ଓଡ଼ିଆମାନେ ପୁଣି ଥରେ ପଥ ହୁଡ଼ି ସରକାରଙ୍କର ପ୍ରଚାର ଭେଳିକିରେ ଭୁଲିଗଲେ ଇତିହାସ ଆମକୁ କ୍ଷମା ଦେବ ନାହିଁ। ତେଣୁ ଭାଷା ସୁରକ୍ଷା ସମ୍ମିଳନୀ ପକ୍ଷରୁ ଆମର ଆପଣମାନଙ୍କୁ ବିନମ୍ର ନିବେଦନ, ଦୀର୍ଘ ୬ ବର୍ଷ ଧରି ଚାଲିଥିବା ଆପଣମାନଙ୍କ ଦ୍ୱାରା ରାଜ୍ୟବ୍ୟାପୀ ଭାଷା ସୁରକ୍ଷା ଆନ୍ଦୋଳନକୁ ଆହୁରି ତୀବ୍ର କରି ଏକ ଉଚ୍ଚ କ୍ଷମତାସଂପନ୍ନ ସରକାରୀ ଭାଷା ଆୟୋଗ ଗଠନକରି ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସରକାରଙ୍କ ଉପରେ ଚାପ ସୃଷ୍ଟି କରନ୍ତୁ।



# ଆଶଙ୍କାରେ ଓଡ଼ିଆ ଭାଷା ଆଇନର କାର୍ଯ୍ୟକାରିତା

ଓଡ଼ିଆରେ ଓଡ଼ିଶାର ଶାସନ ଦାବୀକରି ଗତ ଚାରିବର୍ଷ ଧରି ଚାଲିଥିବା ଭାଷା ଆନ୍ଦୋଳନ ଚାପରେ ରାଜ୍ୟ ସରକାର ୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଏହି ଆଇନରେ ସଂଶୋଧନୀ ଆଣି ନିୟମାବଳୀ ପ୍ରଣୟନ କରିଛନ୍ତି। ଏହି ନିୟମାବଳୀ ଅନୁଯାୟୀ ଗତ ଅଗଷ୍ଟ ୧୬ରୁ ରାଜ୍ୟ ପ୍ରଶାସନ, ନିମ୍ନ ଅଦାଲତ ଓ ବିଧାନସଭା କାର୍ଯ୍ୟ ଓଡ଼ିଆ ଭାଷାରେ ଚାଲିବାର କଥା। ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସରକାର ଜଣେ ଯୁଗ୍ମ ସଚିବଙ୍କ ଅଧକ୍ଷତାରେ ଏକ ଭାଷା ବିଭାଗ ବା ଡିଭିଜନ ଗଠନ କରିଛନ୍ତି। ଏହି ବିଭାଗର କାର୍ଯ୍ୟକୁ ପ୍ରତି ଛ'ମାସରେ ଥରେ ଲେଖାଁ ସମୀକ୍ଷା କରିବା ପାଇଁ ମୁଖ୍ୟଶାସନ ସଚିବଙ୍କ ଅଧକ୍ଷତାରେ ଏକ କମିଟି ଗଠିତ ହୋଇଛି। ସରକାରଙ୍କ ଘୋଷଣା ଶୁଣି ଓଡ଼ିଶାର ଅନେକ ଲୋକ ଆନନ୍ଦରେ ଉତ୍‌ଫୁଲ ହୋଇ ଉଠିଥିଲେ। ବିଶେଷ କରି ସେଦିନ ସେଇସବୁ ଲୋକ ଉଲ୍ଲସିତ ହୋଇଥିଲେ ଯେଉଁମାନେ ଗତ ଚାରିବର୍ଷ ଧରି ଶହଶହ ସଭା ସମିତି କରିଛନ୍ତି, ମୁଖ୍ୟମନ୍ତ୍ରୀଙ୍କୁ ଲକ୍ଷାଧିକ ଚିଠି ଲେଖିଛନ୍ତି, ଜିଲ୍ଲାପାଳଙ୍କ ଅଫିସ ଆଗରେ ଧାରଣା

ଦେଇଛନ୍ତି, ଅନଶନରେ ବସିଛନ୍ତି, ରାଜ୍ୟସାରା ମଶାଲ ଶୋଭାଯାତ୍ରା କରି ଓ କଳାପତାକା ଧରି ସରକାରଙ୍କ ଉପରେ ଚାପ ସୃଷ୍ଟି କରିଛନ୍ତି । ସେମାନେ ଭାବିଥିଲେ ଦୀର୍ଘ ୬୨ ବର୍ଷପରେ ଓଡ଼ିଶାରେ ଏଥର ଓଡ଼ିଆରେ ଶାସନ ଚାଲିବ । କିନ୍ତୁ ସେମାନେ ବୁଝି ପାରିନଥିଲେ ସାରୁ ଭିତରେ ମାରୁ ଅଛି ବୋଲି । ଲୋକଙ୍କ ଚାପରେ ପଡ଼ି ସରକାର ଯାହା କରିଛନ୍ତି ତଥା ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ନୁହେଁ ବରଂ ଆଇନକୁ ବିଫଳ କରିଦେବା ପାଇଁ ସୁଚିନ୍ତିତ କାରସାଦି ।

କାରଣ ସରକାର ଯେଉଁ ନିୟମାବଳୀ ପ୍ରଣୟନ କରିଛନ୍ତି ତାହା ଅତ୍ୟନ୍ତ ଅଧାପନ୍ତରିଆ ଓ ତ୍ରୁଟିପୂର୍ଣ୍ଣ । ତାହା ନ ହୋଇଥିଲେ ଯେଉଁ ଓଡ଼ିଆ ବିରୋଧୀ ଅମଲାତନ୍ତ୍ର ଆଇନକୁ କାର୍ଯ୍ୟକାରି କରିବ ପୁଣି ତାରି ହାତରେ ତା'ର ତଦାରଖି କରିବାର ଦାୟିତ୍ୱ ସରକାର କିପରି ସଅଁପି ଦେଇଥାନ୍ତେ । ଏଥି ସହିତ ନିୟମାବଳୀରେ ରଖାଗଲା ଯେଉଁମାନେ ସରକାରଙ୍କୁ ଓଡ଼ିଆରେ ଚିଠିପତ୍ର ଲେଖିବେ ସେମାନଙ୍କୁ ସରକାର ଓଡ଼ିଆରେ ଉତ୍ତର ଦେବେ ଏବଂ ଇଂରେଜୀରେ ଲେଖିଲେ ଇଂରେଜୀରେ ଉତ୍ତର ମିଳିବ । ଜାନକୀବାବୁଙ୍କ ପରେ ବିଜୁବାବୁ ୧୯୯୦ରେ କ୍ଷମତାକୁ ଆସିଲାପରେ ଘୋଷଣା କରିଦେଲେ ଯିଏ ଓଡ଼ିଆରେ ପାରିବ ଓଡ଼ିଆରେ ଲେଖ ଏବଂ ଯିଏ ଇଂରାଜୀରେ ଚାହୁଁଛି ଇଂରାଜୀରେ ଲେଖୁ । ଗୋଳିପାଣି କଙ୍କଡ଼ାକୁ ସୁହାଇଲା ଭଳି ସମସ୍ତ ସରକାରୀ ଅଫିସର ଇଂରାଜୀରେ ଲେଖିଲେ । ଓଡ଼ିଆ ଭାଷା ବେଇଜତ୍ ମୁଣ୍ଡରେ ଓଢ଼ଣି ଢାଙ୍କି ହୋଇ ଚୁପ୍‌ଚାପ ରହିଗଲା ।

ଆମ ସରକାର ଓ ଅମଲତନ୍ତ୍ରର ଓଡ଼ିଆ ଭାଷାପ୍ରେମ ଓ ଆନ୍ତରିକତା ସଂପର୍କରେ ଓଡ଼ିଶାର ଲୋକେ ଭଲଭାବେ ଜାଣନ୍ତି । ଗତ ୬୨ ବର୍ଷଧରି ଅଫିସରମାନେ ଓଡ଼ିଆରେ ଲେଖାପଢ଼ା କରିବାକୁ ଭୁଲିଗଲେଣି । ଅଣଓଡ଼ିଆ ଅଫିସରମାନଙ୍କର ଓଡ଼ିଆରେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଓଡ଼ିଆ ଜ୍ଞାନ ପୂର୍ବର ୩ୟ ଶ୍ରେଣୀର ଜ୍ଞାନ ସହିତ ସମାନ ହେବ ନାହିଁ । ଅନେକ ଇଂରେଜୀ ମାଧ୍ୟମ ସ୍କୁଲରେ ପଢ଼ିଛନ୍ତି । ସରକାର ନଥିପତ୍ର କାମ କରିବା ପାଇଁ ସେମାନଙ୍କୁ ଆହୁରି ଅନେକେ ଶିଖିବାକୁ ହେବ ଓ ଅଭ୍ୟାସ କରିବାକୁ ପଡ଼ିବ । ଏତେ କଷ୍ଟ କରିବା ଅପେକ୍ଷା ଆଇନରେ ଫାଙ୍କ ରଖିଦେଇ ସେଇବାଟେ ପଳେଇଯିବେ । ସେଥିପାଇଁ ଭାଷା ସୁରକ୍ଷା ସମ୍ମିଳନୀ ଦାବୀ କରି ଆସିଛି ଆଇନରେ ଏପରି ବ୍ୟବସ୍ଥା ରହୁ ଯଦ୍ୱାରା ଆମ ଭାଷା ଆଇନ ଗତ ୬୨ ବର୍ଷ ଧରି ଯେପରି ଅଣଦେଖା ଅବସ୍ଥାରେ ପଡି ରହିଛି, ସେପରି ନହେଉ । ସରକାର ଭାଷା ଆଇନକୁ ସୁଚାରୁ ରୂପେ କାର୍ଯ୍ୟକାରୀ କରିବା ନିମିତ୍ତ ଏଥିରେ ଏକ ନିରପେକ୍ଷ କ୍ଷମତାସଂପନ୍ନ ଭାଷା ଆୟୋଗ ଗଠନ ନିମିତ୍ତ

ପ୍ରାବଧାନ କରନ୍ତୁ। ଏଥି ସହିତ ଯେଉଁ ଅମଲା ବା ଅଫିସରମାନେ ଭାଷା ଆଇନକୁ କାର୍ଯ୍ୟକାରୀ କରିବାରେ ଖିଲାଫ କରିବେ ସେମାନଙ୍କ ପ୍ରତି ଦଣ୍ଡବିଧାନର ବ୍ୟବସ୍ଥା ମଧ୍ୟ ରହୁ। ଭାଷା ଆୟୋଗ ଅମଲାତନ୍ତ୍ରଠାରୁ ସଂପୂର୍ଣ୍ଣ ଅଲଗା ରହିବ ଏବଂ ଓଡ଼ିଆ ଭାଷାକୁ ଶ୍ରଦ୍ଧା କରୁଥିବା ବିଶିଷ୍ଟ ବିଚାରପତି, ବରିଷ୍ଠ ସାମ୍ବାଦିକ, ଭାଷାବିତ୍ ଓ ପୂର୍ବତନ ପ୍ରଶାସକଙ୍କୁ ନେଇ ଗଠିତ ହେବ। କେନ୍ଦ୍ର ସରକାରଙ୍କର ରାଷ୍ଟ୍ରଭାଷା ଆୟୋଗ, ଆନ୍ଧ୍ରପ୍ରଦେଶର ଭାଷା ଆୟୋଗ ବା କର୍ଣ୍ଣାଟକର କନ୍ନଡ଼ ଭାଷା ବିକାଶ ଆୟୋଗ ଭଳି ଏକ କ୍ଷମତା ସଂପନ୍ନ ଅର୍ଦ୍ଧ-ନ୍ୟାୟିକ ଅନୁଷ୍ଠାନ ବା ଷ୍ଟାଚ୍ୟୁଟରୀ ବଡି ଭଳି କାର୍ଯ୍ୟକରିବ। ଏହାର କାର୍ଯ୍ୟହେବ ଅମଲାତନ୍ତ୍ର ସରକାରୀ ଭାଷା ଆଇନକୁ କିପରି କାର୍ଯ୍ୟକାରୀ କରୁଛି ତାକୁ ତଦାରଖ ବା ମନିଟରିଂ କରିବା। ଆବଶ୍ୟକ ମତେ ଏହିସବୁ କ୍ଷେତ୍ରରେ ଇଂରେଜୀ ବଦଳରେ ଓଡ଼ିଆ ଭାଷାର ପ୍ରୟୋଗକୁ ତ୍ୱରାନ୍ୱିତ କରିବା ପାଇଁ ସରକାରଙ୍କୁ ଆବଶ୍ୟକ ପଦକ୍ଷେପ ନେବାକୁ ସୁପାରିଶ କରିବ। ଅନିଚ୍ଛୁକ ଅଫିସରମାନେ ଯେଉଁଠି ଆଇନକୁ କାର୍ଯ୍ୟକାରୀ ନ କରୁଛନ୍ତି ସେମାନଙ୍କ ସଂପର୍କରେ ସରକାରଙ୍କୁ ଅବହିତ କରିବ ଓ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ମଧ୍ୟ ପରାମର୍ଶ ଦେବ। କେନ୍ଦ୍ର ଏବଂ ଅନ୍ୟ ରାଜ୍ୟ ସରକାରଙ୍କର ଭାଷା ଆୟୋଗଗୁଡ଼ିକ ପରି ଏହାର ରିପୋର୍ଟ ରାଜ୍ୟ ସରକାର ବିଧାନସଭାରେ ଉପସ୍ଥାପନ କରିବେ। ଏହି ରିପୋର୍ଟ ଉପରେ ବିଧାୟକମାନେ ଆଲୋଚନା ମଧ୍ୟ କରିପାରିବେ। ଭାଷା ଆୟୋଗ ଓ ଦଣ୍ଡବିଧାନ ବ୍ୟବସ୍ଥା ନ ରହିଲେ ଅମଲାତନ୍ତ୍ର ଆଇନକୁ ଖାତିର କରିବ ନାହିଁ। ଓଡ଼ିଶାରେ ଓଡ଼ିଆ ଭାଷା ପ୍ରତି ବହୁ ରାଜନୈତିକ ନେତାଙ୍କର ହେୟ ମନୋଭାବ ଓ ଅମଲାତନ୍ତ୍ରର ଲୁକ୍କାୟିତ ଷଡଯନ୍ତ୍ରର ଶିକାର ହେବ ଭାଷା ଆଇନ ଓ ଓଡ଼ିଆ ଭାଷା। ତେଣୁକରି ସରକାର ଏତେ ବର୍ଷପରେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁ ପଦକ୍ଷେପ ନେଲେ ତାକୁ ଓଡ଼ିଆ ଲୋକେ ସ୍ୱାଗତ ନ କରି ଏହାର କାର୍ଯ୍ୟକାରିତାକୁ ନେଇ ଗଭୀର ଆଶଙ୍କା ପ୍ରକାଶ କରିଛନ୍ତି।

ଆମକୁ ମନେ ରଖିବାକୁ ହେବ ଏକ ଅଧାପନ୍ତରିଆ ତ୍ରୁଟିପୂର୍ଣ୍ଣ ଆଇନ ଓ ଆଇନରେ ଫାଙ୍କ ଦ୍ୱାରା ଅଭିଷ୍ଟ ଫଳ ମିଳେ ନାହିଁ। ଯେଉଁମାନଙ୍କର ଏପରି ଏକ ଆଇନକୁ କାର୍ଯ୍ୟକାରୀ ନ କରିବାକୁ ମନ୍ଦ ଉଦ୍ଦେଶ୍ୟ ଥାଏ ସେମାନେ ଏହି ଦରପନ୍ତରିଆ ଆଇନ ବା ଆଇନରେ ଫାଙ୍କ ଦ୍ୱାରା ଆଇନକୁ ଧୀରେଧୀରେ ଅକାମି କରି ଦିଅନ୍ତି। ଠିକ୍ ଏହିପରି ଘଟିଥିଲା ୧୯୫୪ ସରକାରୀ ଭାଷା ଆଇନ କ୍ଷେତ୍ରରେ। ନବକୃଷ୍ଣ ଚୌଧୁରୀ ଓଡ଼ିଶା ବିଧାନସଭାରେ ଆଇନଟିକୁ ପାଶ୍ କରିଦେଲେ। କିନ୍ତୁ ଏଥିରେ ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକୀୟ ନିୟମାବଳୀ ପ୍ରଣୟନ

କରିବା ନିମିତ୍ତ ସରକାରଙ୍କ ପ୍ରତି ନିର୍ଦ୍ଦେଶ ନଥିଲା । ଏହି ତ୍ରୁଟିଟିର ସୁଯୋଗ ନେଇ ଓଡ଼ିଶାର କେତେକ ମୁଖ୍ୟମନ୍ତ୍ରୀ ଓ ଅମଲାମାନେ ଭାଷା ଆଇନଟିକୁ କାର୍ଯ୍ୟକାରୀ କଲେ ନାହିଁ । ନବକୃଷ୍ଣ ଚୌଧୁରୀ ବା ଜାନକୀବାବୁ ଯଦି ଆଇନର ନିୟମାବଳୀ ପ୍ରଣୟନ ଓ ଭାଷା ଆୟୋଗ ଗଠନ କଥାଟିକୁ ଆଇନର ଅନ୍ତର୍ଭୁକ୍ତ କରିଦେଇଥାନ୍ତେ ତେବେ ସେମାନଙ୍କ ପରେ ଏବେ ବି ଓଡ଼ିଆରେ ଓଡ଼ିଶାର ଶାସନ ଚାଲୁଥାନ୍ତା । ସରକାରଙ୍କ ପାଇଁ ଅତୀତର ଏହି ଅଭିଜ୍ଞତାରୁ ଶିକ୍ଷାଲାଭ କରି ଭାଷା ଆୟୋଗ ଗଠନକୁ ଆଇନରେ ଓ ଦଣ୍ଡବିଧାନ ବ୍ୟବସ୍ଥାକୁ ନିୟମାବଳୀରେ ଅନ୍ତର୍ଭୁକ୍ତ କରିବା ଏକ ବୁଦ୍ଧିମତାର କାର୍ଯ୍ୟହେବ । ଏଇ ଦୁଇଟି ବ୍ୟବସ୍ଥା ଭାଷା ଆଇନକୁ କାର୍ଯ୍ୟକାରୀ କରିବା ଦିଗରେ ଗ୍ୟାରେଣ୍ଟି ଭଳି କାର୍ଯ୍ୟକରିବ । ତେଣୁକରି ଭାଷା ସୁରକ୍ଷା ସମ୍ମିଳନୀ ୨୦୧୩ ମସିହାରୁ ତା'ର ୧୧ ଦଫା ଦାବୀ ମଧ୍ୟରେ ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନ ବ୍ୟବସ୍ଥାକୁ ଏକ ନମ୍ବର ଦାବୀ ରୂପେ ଉପସ୍ଥାପନ କରି ଆସିଛି । ଏବେ କେତେକ ଭାଷାପ୍ରେମୀ ବ୍ୟକ୍ତି ଭାଷା ଆୟୋଗ ଗଠନ ପାଇଁ ଦାବୀ ନକରି କେବଳ ଦଣ୍ଡବିଧାନ କଥା କହୁଛନ୍ତି । ଦଣ୍ଡବିଧାନ ପାଇଁ କିଏ ସୁପାରିଶ କରିବ ଓ ଦଣ୍ଡବିଧାନ କିଏ କରିବ ? ଅଫିସରମାନେ କ'ଣ ଅଫିସରଙ୍କ ବିରୋଧରେ ଅଭିଯୋଗ ଆଣିବେ ଓ ଦଣ୍ଡବିଧାନ କରିବେ ?

ଆମ ରାଜ୍ୟର ରାଜନୀତି ଓ ସଂସ୍କୃତି ଉପରେ ବୁଦ୍ଧିଜୀବୀମାନଙ୍କର ଯେତେ ପ୍ରଭାବ ନାହିଁ ଅମଲାତନ୍ତ୍ରର ପ୍ରଭାବ ଅନେକ ଅଧିକ । ଯେଉଁଠି ରାଜନୈତିକ ନେତୃତ୍ୱ ଦୁର୍ବଳ ଓ ଦୂରଦୃଷ୍ଟିହୀନ ସେଠି ଅମଲାତନ୍ତ୍ରର ପ୍ରଭାବ ବେଶି । ଯେଉଁ ଦେଶର ରାଜନୈତିକ ନେତୃତ୍ୱ ଅମଲାତନ୍ତ୍ର ଉପରେ ଶାସନର ଦାୟିତ୍ୱ ଛାଡ଼ିଦିଏ ସେ ଦେଶର ବିକାଶ ବାଟବଣା ହେବାକୁ ବାଧ୍ୟ । କାରଣ ଅମଲାତନ୍ତ୍ରର ଚରିତ୍ର ହେଲା ଦୁର୍ନୀତିକୁ ନୀତିରେ ପରିଣତ କରିବା ଏବଂ ଲୋକଙ୍କ ସ୍ୱାର୍ଥରେ ମୌଳିକ ପରିବର୍ତ୍ତନକୁ ବିରୋଧ କରିବା । ତେଣୁ ଗୋଟିଏ ଜାତିର ପ୍ରିୟ ମାତୃଭାଷାର ଦାୟିତ୍ୱ ଅମଲାତନ୍ତ୍ର ଉପରେ ଛାଡ଼ିଦେଲେ ସେ ଭାଷା କେବେ ଉଧେଇବ ନାହିଁ । ତା' ନ ହୋଇଥିଲେ ଆମର ଭାଷା, ବିଶ୍ୱବିଦ୍ୟାଳୟ, ମହାବିଦ୍ୟାଳୟ, ବିଦ୍ୟାଳୟ ଓ ଭାଷା ପ୍ରତିଷ୍ଠାନର ଅବସ୍ଥା ଏପରି ଦୟନୀୟ ହୋଇ ନଥାନ୍ତା ।

ଆଗାମୀ ବିଧାନସଭା ଅଧିବେଶନ ସରକାରଙ୍କ ପାଇଁ ଆଉ ଏକ ସୁଯୋଗ ଆଣୁଛି । ଏହି ଅଧିବେଶନରେ ଭାଷା ଆଇନର ରାଜ୍ୟପାଳଙ୍କ ଅଧ୍ୟାଦେଶ ବଳରେ ଯେଉଁ ସଂଶୋଧନୀ ଓ ନିୟମାବଳୀ ପ୍ରଣୟନ କରିଛନ୍ତି ସେସବୁ ଆଗାମୀ ଅଧିବେଶନରେ ଗୃହୀତ କରାଇବାକୁ ହେବ । ସେତିକିବେଳେ ଯେଉଁ ଅସଲ

ବ୍ୟବସ୍ଥାଟିକୁ ସରକାର ଯେଉଁ କାରଣରୁ ଗ୍ରହଣ କରି ନାହାନ୍ତି ତାକୁ ବିଧାନସଭା ଅଧିବେଶନରେ ସଂଶୋଧନୀ ଆକାରରେ ଉପସ୍ଥାପନ କରି ଗ୍ରହଣ କରାଇ ପାରିବେ। ଆମ ବିଶ୍ୱାସ, ସରକାର ଭାଷା ଆୟୋଗ ଓ ଦଣ୍ଡବିଧାନ ପ୍ରସ୍ତାବ ଆଣିଲେ ସରକାରୀ ଓ ବିରୋଧୀ ଦଳର ଶତପ୍ରତିଶତ ସଦସ୍ୟ ଆନନ୍ଦରେ ସମର୍ଥନ କରିବେ। ତାପରେ ଭାଷା ଆଇନକୁ କାର୍ଯ୍ୟକାରୀ କରିବାର ପଥ ସୁଗମ ହୋଇଯିବ।



# ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ 'କାମରାଜଙ୍କ ଫର୍ମୁଲା'

ଗତ ୨୦୧୪ ସାଧାରଣ ନିର୍ବାଚନ ପୂର୍ବରୁ ଓଡ଼ିଶାର ସ୍ୱନାମଧନ୍ୟ ଲେଖକ ଓ ରାଜନୈତିକ ଭାଷ୍ୟକାର ଡ. ବିଭୂତି ପଟ୍ଟନାୟକ ଏକ ଓଡ଼ିଆ ଦୈନିକ ପତ୍ରିକାରେ ୧୯୫୪ ଭାଷା ଆଇନକୁ ନେଇ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପୂର୍ବାନୁମାନ କରିଥିଲେ। ସେ ଲେଖିଥିଲେ, ୨୦୧୪ ନିର୍ବାଚନରେ ବିଜେଡ଼ି ଯଦି ପୁଣି କ୍ଷମତାକୁ ଆସେ ତେବେ ବହୁପ୍ରତୀକ୍ଷିତ ସରକାରୀ ଭାଷା ଆଇନ ଆଉ କାର୍ଯ୍ୟକାରୀ ହୋଇପାରିବ ନାହିଁ। ଏହି ମନ୍ତବ୍ୟ ଦେବା ପୂର୍ବରୁ ସେ ଓଡ଼ିଶାରେ ଚାଲିଥିବା ଭାଷା ଆନ୍ଦୋଳନକୁ ନିବିଡ଼ ଭାବେ ଅନୁଶୀଳନ କରୁଥିଲେ ଏବଂ ଆନ୍ଦୋଳନର କେତୋଟି କାର୍ଯ୍ୟକ୍ରମରେ ଯୋଗଦେଇଥିଲେ। ଆନ୍ଦୋଳନକାରୀମାନଙ୍କ ମଧ୍ୟରେ ବିଶେଷ ଉଦ୍ଦୀପନାକୁ ଲକ୍ଷ୍ୟକରି ସେ ନିଜେ ଉତ୍ସାହିତ ହୋଇଥିଲେ। ଓଡ଼ିଆମାନଙ୍କ ଜାତୀୟ ସ୍ୱାଭିମାନ, ସାମ୍ବିଧାନିକ ଅଧିକାର ଏବଂ ଜୀବନ ଜୀବିକା ସହିତ ଜଡ଼ିତ ୧୯୫୪ ସରକାରୀ ଭାଷା ଆଇନ ଦୀର୍ଘଦିନ ଧରି କାର୍ଯ୍ୟକାରୀ ନହେବା ଓଡ଼ିଆମାନଙ୍କ ପାଇଁ ଅତ୍ୟନ୍ତ ଲଜ୍ଜାକର କଥା ବୋଲି ଅନୁଭବ କରୁଥିଲେ। ଓଡ଼ିଶାର ୯୦%ରୁ ଅଧିକ ଲୋକ ଇଂରେଜୀରେ ଲେଖିପଢ଼ି ଜାଣନ୍ତି

ନାହିଁ। ଅର୍ଥାତ୍ ଏଠାରୁ ଇଂରେଜମାନେ ଚାଲିଯିବାର ୭୦ବର୍ଷ ପରେ ବି ଇଂରେଜୀରେ ଶାସନ ଚାଲିଛି। ଫଳରେ ଶାସନ, ନ୍ୟାୟ ବ୍ୟବସ୍ଥା ଓ ଲୋକମାନଙ୍କ ମଧ୍ୟରେ ବ୍ୟବଧାନ ବଢୁଛି। ଦୁର୍ନୀତି, ବାଟମାରଣା ବଢ଼ି ଚାଲିଛି। ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଶାସନ ପରେ ଗତ ୧୮ବର୍ଷ ମଧ୍ୟରେ ପ୍ରଶାସନ, ନ୍ୟାୟ ବ୍ୟବସ୍ଥା ଏବଂ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରୁ ଓଡ଼ିଆ ଭାଷା ଲୋପ ପାଇଗଲାଣି। ଏହା ଆମର ସାମାଜିକ ଜୀବନ, ଶିକ୍ଷା ବ୍ୟବସ୍ଥା, ସାହିତ୍ୟ ସଂସ୍କୃତିକୁ ଗଭୀର ଭାବେ ପ୍ରଭାବିତ କରୁଛି। ଏସବୁ ଘଟି ଚାଲିଥିଲା ବେଳେ ଭାଷା ଆଇନ କାର୍ଯ୍ୟକାରୀ ହେବା ପାଇଁ ଆନ୍ଦୋଳନ ହେବା ଦରକାର । ସରକାର କାହିଁକି ଆଇନକୁ କାର୍ଯ୍ୟକାରୀ କରୁନାହାଁନ୍ତି ଏବଂ ଅସୁବିଧା କେଉଁଠି ସେ କଥା ଜାଣିବା ଏକାନ୍ତ ଆବଶ୍ୟକ। ନଚେତ୍ ଆନ୍ଦୋଳନ ଫଳପ୍ରଦ ହେବନାହିଁ।

ସେ ଲେଖିଥିଲେ, ଭାଷା ଆଇନକୁ କାର୍ଯ୍ୟକାରୀ କରିବାକୁ ହେଲେ ପ୍ରଥମେ ଆମ ମୁଖ୍ୟମନ୍ତ୍ରୀଙ୍କୁ ଓଡ଼ିଆ ଶିଖିବାକୁ ହେବ। କାରଣ ଭାଷା ଆଇନ କାର୍ଯ୍ୟକାରୀ ହେଲେ ତାଙ୍କୁ ସମସ୍ତ ଫାଇଲପତ୍ର କାମ ଓଡ଼ିଆରେ କରିବାକୁ ହେବ। ସେ ଓଡ଼ିଆରେ ଲେଖିପଢ଼ି ଜାଣିନଥିବାରୁ ସେସବୁ କାମ କରିପାରିବେ ନାହିଁ। ମୁଖ୍ୟମନ୍ତ୍ରୀ ନକଲେ ତାଙ୍କର ମନ୍ତ୍ରୀ ଏବଂ ଅଧିକାରୀମାନେ ମଧ୍ୟ କରିବେ ନାହିଁ। ନବୀନ ବାବୁ ମୁଖ୍ୟମନ୍ତ୍ରୀ ହେଲାପରେ ପ୍ରଶାସନିକ, ନ୍ୟାୟାଳୟ ଓ ବ୍ୟବସାୟ ବାଣିଜ୍ୟର କାର୍ଯ୍ୟ ଓଡ଼ିଆରେ ହୋଇପାରିଲା ନାହିଁ। ତେଣୁ ବିଭୂତି ବାବୁ ଲେଖିଥିଲେ ଓଡ଼ିଆ ଜାଣିନଥିବା ନବୀନ ବାବୁ ମୁଖ୍ୟମନ୍ତ୍ରୀ ଥିବାଯାଏ ଓଡ଼ିଶାରେ ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ହୋଇ ପାରିବ ନାହିଁ। ୨୦୧୪ରେ ବିଜେଡ଼ି ବିପୁଳ ଭୋଟରେ ଜିତିଲା ଏବଂ ନବୀନ ବାବୁ ପୁଣି ମୁଖ୍ୟମନ୍ତ୍ରୀ ହେଲେ। ଇତିମଧ୍ୟରେ ୪ବର୍ଷ ବିତିଗଲାଣି। ସେ କ୍ଷମତାକୁ ଆସିଲେ ଭାଷା ଆଇନ କାର୍ଯ୍ୟକାରୀ ହୋଇପାରିବ ନାହିଁ ବୋଲି ବିଭୁତି ବାବୁ ଯେଉଁ ପୂର୍ବାନୁମାନ କରିଥିଲେ ତାହା ନିର୍ଭୁଲ ପ୍ରମାଣିତ ହୋଇଛି। ଗତ ୪ବର୍ଷ ମଧ୍ୟରେ ନବୀନ ବାବୁ ଓଡ଼ିଆ ଶିଖିଲେ ନାହିଁ କି ତାଙ୍କର ଅତି ବିଶ୍ୱସ୍ତ ପ୍ରଭାବଶାଳୀ ଅଧିକାରୀମାନେ ଭାଷା ଆଇନକୁ କାର୍ଯ୍ୟକାରୀ କରାଇ ନଦେବା ପାଇଁ ସମସ୍ତ ପ୍ରକାର ଉଦ୍ୟମ କଲେ। ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ 'ଭାଷା ସୁରକ୍ଷା ସମ୍ମିଳନୀ' ପକ୍ଷରୁ ପ୍ରସ୍ତାବିତ "ସରକାରୀ ଭାଷା ଆୟୋଗ" ସେମାନେ ଗଠନ କଲେନାହିଁ। ନିଜର ଅନିଚ୍ଛାକୁ ଘୋଡ଼ାଇବା ସହିତ ଓଡ଼ିଆମାନଙ୍କୁ ଭୂଆଁ ବୁଲାଇବା ନିମିତ୍ତ କେତେବେଳେ ଭାଷା ଡିଭିଜନ ଗଠନ, ଓଡ଼ିଆ ଭାଷା ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ବିଂଶସୂତ୍ରୀ କାର୍ଯ୍ୟକ୍ରମ ତ ଆଉ କେତେବେଳେ ନାମଫଳକ ଓଡ଼ିଆରେ ନ

ଲେଖିଲେ ଦଣ୍ଡବିଧାନ ବା ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯିବ ବୋଲି ଘୋଷଣା କରୁଛନ୍ତି। କିନ୍ତୁ କୌଣସି ଘୋଷଣା କାର୍ଯ୍ୟରେ ପରିଣତ ହେଉନାହିଁ କି ଭାଷା ଆଇନ କାର୍ଯ୍ୟକାରୀ ହେଉନାହିଁ।

ଓଡ଼ିଶାରେ ଗତ ୬ବର୍ଷ ଧରି ଚାଲିଥିବା 'ଭାଷା ସୁରକ୍ଷା' ଆନ୍ଦୋଳନ ଆଜି ଓଡ଼ିଆମାନଙ୍କ ଆଖିକୁ ଅନେକ ପରିମାଣରେ ଖୋଲି ଦେଇଛି। ନିଜ ମାତୃଭାଷାରେ ଶାସନର ଆବଶ୍ୟକତା କେତେ ବେଶି ତାହା ସେମାନେ ଅନୁଭବ କଲେଣି। ଏହି ଆନ୍ଦୋଳନର ଆଉ ଏକ ବୈଶିଷ୍ଟ୍ୟ ହେଲା ଏହାକୁ ଓଡ଼ିଶାର ପ୍ରାୟ ସମସ୍ତ ପ୍ରମୁଖ ରାଜନୈତିକ ଦଳ ସକ୍ରିୟ ଭାବେ ସମର୍ଥନ କରୁଛନ୍ତି। ସେମାନେ କ୍ଷମତାକୁ ଆସିଲେ ଏହି ଐତିହାସିକ ଆଇନଟିକୁ କାର୍ଯ୍ୟକାରୀ କରିବେ ବୋଲି ଘୋଷଣା କଲେଣି। ତେଣୁ ଆଗାମୀ ନିର୍ବାଚନରେ ଓଡ଼ିଆ ଭାଷା ଆଇନର କାର୍ଯ୍ୟାୟନ ଏକ ମୁଖ୍ୟ ପ୍ରସଙ୍ଗ ହେବ ବୋଲି ଅନେକ ମନେକରୁଛନ୍ତି। ଏମନ୍ତ ଅବସ୍ଥାରେ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କର ୪କୋଟି ଓଡ଼ିଆ ଭୋଟରଙ୍କ ଆଗରେ ନିଜର ଜବାବ ରଖିବାକୁ ହେବ ଏବଂ ଏବେ ସେ କ୍ଷମତାକୁ ଆସିଲେ ଆଇନକୁ କିପରି କାର୍ଯ୍ୟକାରୀ କରିବାକୁ ହେବ ତା'ର ସୂଚନା ଦେବାକୁ ପଡ଼ିବ।

ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟବ୍ୟାପୀ ଆନ୍ଦୋଳନ ଚାଲିଥିବା ବେଳେ ସରକାର କାହିଁକି ଏହାକୁ କାର୍ଯ୍ୟକାରୀ କରୁ ନାହାନ୍ତି ବୋଲି ଅନେକ ପ୍ରଶ୍ନ କରୁଛନ୍ତି। ଅନ୍ୟ ରାଜ୍ୟ ପରି ବିଶିଷ୍ଟ ଲେଖକ, ଭାଷାବିତ୍, ଆଇନଜ୍ଞ, ପୂର୍ବତନ ପ୍ରଶାସକ ଓ କମ୍ପ୍ୟୁଟର ବିଶେଷଜ୍ଞଙ୍କୁ ନେଇ ଭାଷା ଆୟୋଗ ଗଠିତ ହେଲେ ସେମାନେ ସହଜରେ ସେ କାର୍ଯ୍ୟ କରିପାରନ୍ତେ। ଆୟୋଗ ସରକାରଙ୍କୁ ପରାମର୍ଶ ଦିଅନ୍ତେ, ଆଇନ କିପରି କାର୍ଯ୍ୟକାରୀ ହେଉଛି ତା'ର ତଦାରଖ କରନ୍ତେ, ଦରକାର ହେଲେ ଦଣ୍ଡବିଧାନ ପାଇଁ ସୁପାରିଶ କରନ୍ତେ। କିନ୍ତୁ ମୁଖ୍ୟମନ୍ତ୍ରୀ ଏବଂ ପ୍ରଭାବଶାଳୀ ଅଧିକାରୀମାନେ ଭାଷା ଆୟୋଗ ଗଠନ କଥା ମୁହଁରେ ଧରୁ ନାହାନ୍ତି। ନ ଧରିବାର ମୁଖ୍ୟ କାରଣ ସଂପର୍କରେ ବିଭୂତି ବାବୁ ଯେଉଁ କଥା କହିଥିଲେ ତାକୁ ଏବେ ଲୋକେ ବୁଝିଲେଣି। ଏ କ୍ଷେତ୍ରରେ ମୁଖ୍ୟ ବାଧକ ହେଉଛନ୍ତି ସ୍ୱୟଂ ମୁଖ୍ୟମନ୍ତ୍ରୀ। ସେ ଓଡ଼ିଆ ଲେଖିପଢ଼ି ଜାଣି ନଥିବାରୁ ତାଙ୍କ ପାଖକୁ ଓଡ଼ିଆରେ ଯେଉଁ ଫାଇଲ ସବୁ ଆସିବ ତାକୁ ସେ ପଢ଼ି ସେଥିରେ ପରିବର୍ତ୍ତନ କରିପାରିବେ ନାହିଁ କି ଓଡ଼ିଆରେ ଟିପ୍ପଣୀ ଦେଇପାରିବେ ନାହିଁ। ତେଣୁ ଭାଷା ଆଇନ ଅଟକି ଯିବ ତାଙ୍କରି ଟେବୁଲରେ। ମୁଖ୍ୟମନ୍ତ୍ରୀଙ୍କର ଏହି ଦୁର୍ବଳତାଟିକୁ ସିଏ ନିଜେ ବୁଝିଛନ୍ତି। ତେଣୁକରି ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଭାଷା ଆୟୋଗ ଗଠନ କରିବାକୁ ନିର୍ଦ୍ଦେଶ ଦେଉନାହାନ୍ତି।

ଆୟୋଗ ଗଠିତ ହେଲେ ତାଙ୍କ ମନ୍ତ୍ରୀ ଏବଂ ଅଧିକାରୀମାନେ ଫାଇଲର ନଥିପତ୍ର ଓଡ଼ିଆରେ ଲେଖିବାକୁ ବାଧ୍ୟହେବେ।

ଏମନ୍ତ ଅବସ୍ଥାରେ ନବୀନ ବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲାଯାଏ ଭାଷା ଆଇନ କାର୍ଯ୍ୟକାରୀ ହୋଇପାରିବ ବୋଲି ଓଡ଼ିଆମାନଙ୍କୁ ପ୍ରଥମେ ମାନିବାକୁ ପଡ଼ିବ। ନଚେତ୍ ଏହି ଜାତୀୟ ସମସ୍ୟାର ସମାଧାନ ପାଇଁ ଆଉ କୌଣସି ଉପାୟ ବାହାର କରିବାକୁ ହେବ। ଏଥିପାଇଁ 'ଭାଷା ସୁରକ୍ଷା ସମ୍ମିଳନୀ' ମୁଖ୍ୟମନ୍ତ୍ରୀଙ୍କୁ ଏକ ଫର୍ମୁଲା ବା ସୂତ୍ର ପ୍ରଦାନ କରିଛି। ସେ ଫର୍ମୁଲାଟି ହେଉଛି ଜାତୀୟ କଂଗ୍ରେସର ପ୍ରଖ୍ୟାତ ନେତା ତାମିଲନାଡୁର ପୂର୍ବତନ ମୁଖ୍ୟମନ୍ତ୍ରୀ କାମରାଜ ନାଦାରଙ୍କର। କାମରାଜ ଇଂରେଜୀ ଜାଣିନଥିଲେ। ତେଣୁ ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ତାଙ୍କ ପାଖକୁ ଯାଉଥିବା ଇଂରେଜୀରେ ଲେଖା ଦରକାରୀ ଫାଇଲଗୁଡ଼ିକ ସହିତ ତା'ର ଅବିକଳ ତାମିଲ ନକଲ ମଧ୍ୟ ଯାଉଥିଲା । ସେ ତାମିଲରେ ଲେଖା ନଥିପତ୍ର ପଢ଼ି ଇଂରେଜୀ ଫାଇଲରେ ଦସ୍ତଖତ କରୁଥିଲେ। ଠିକ୍ ସେଇପରି ଓଡ଼ିଶା କ୍ଷେତ୍ରରେ ଆମ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଓଡ଼ିଆରେ ଲେଖା ନଥିପତ୍ରର ଅବିକଳ ଇଂରେଜୀ ନକଲ ବା 'ଟ୍ରୁ କପି' ଯାଆନ୍ତା। ସେ ଇଂରେଜୀ ନକଲକୁ ପଢ଼ି ଓଡିଆ ନଥିପତ୍ରରେ ଦସ୍ତଖତ କରି ପାରନ୍ତେ।

ଭାଷା ଆଇନ ସମସ୍ୟାର ସମାଧାନ କରିବାର ଦ୍ୱିତୀୟ ସୂତ୍ରଟି ହେଲା କାମରାଜଙ୍କର ସେଇ ବିଖ୍ୟାତ 'ପ୍ଲାନ' ଯଦ୍ୱାରା ଦଳର ସ୍ୱାର୍ଥ ଦୃଷ୍ଟିରୁ ଏବଂ ଦଳୀୟ ସଂଗଠନ ପାଇଁ ଅଧିକ ସମୟ ଦେବାକୁ କଂଗ୍ରେସର ତୁଙ୍ଗ ନେତାମାନେ କ୍ଷମତାରୁ ଅବ୍ୟାହତି ନେଇ ପାର୍ଟି ଦାୟିତ୍ୱ ନେଇଥିଲେ। ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ଦଳର ସ୍ୱାର୍ଥ ଦୃଷ୍ଟିରୁ ମୁଖ୍ୟମନ୍ତ୍ରୀ ପଦ ପରିତ୍ୟାଗ କରି ତାଙ୍କ ସ୍ଥାନରେ ବୀରେନ୍ ମିତ୍ରଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ କରାଇଥିଲେ। ନବୀନ ବାବୁ ପିତାଙ୍କର ଆଦର୍ଶକୁ ଅନୁସରଣ କରି ନିଜେ ପାର୍ଟିର ନେତୃତ୍ୱରେ ରହି ବିଜେଡ଼ିରେ ଆଉ ଜଣେ ଦୃଢ଼ମନା ଭାଷାପ୍ରେମୀ ନେତାଙ୍କୁ ମୁଖ୍ୟମନ୍ତ୍ରୀ ପଦରେ ବସାଇ ପାରନ୍ତେ, ଯିଏ ଓଡ଼ିଆରେ ପ୍ରଶାସନିକ କାର୍ଯ୍ୟ କରିବା ସହିତ ଆଇନକୁ କାର୍ଯ୍ୟକାରୀ କରନ୍ତେ। ଏବେ ନିର୍ବାଚନ ହେବାକୁ ଆହୁରି ବର୍ଷେ ବାକି ଅଛି। ମୁଖ୍ୟମନ୍ତ୍ରୀ ଏବେ ଓଡ଼ିଆ ଶିଖିବାକୁ କାମରାଜଙ୍କର ପ୍ରଥମ ସୂତ୍ରଟିକୁ କାର୍ଯ୍ୟକାରୀ କରିପାରିଲେ ନିର୍ବାଚନ ପରେ ବିଜେଡି ଜିତିଲେ ତାଙ୍କ ସ୍ଥାନରେ ଓଡ଼ିଆ ଜାଣିଥିବା ଜଣେ ବିଜେଡ଼ି ନେତାଙ୍କୁ ମୁଖ୍ୟମନ୍ତ୍ରୀ କରିବାର ଆବଶ୍ୟକତା ପଡ଼ିବ ନାହିଁ।

ପ୍ରଥମ ସୂତ୍ରଟି ମୁଖ୍ୟମନ୍ତ୍ରୀଙ୍କ ପାଇଁ ଅବଶ୍ୟ ଅପେକ୍ଷାକୃତ ସହଜ ହେବ। ଦ୍ୱିତୀୟଟି କଷ୍ଟକର; କାରଣ ସେ ତାଙ୍କ ପିତାଙ୍କ ପରି ୪କୋଟି ଓଡ଼ିଆଙ୍କୁ ସମ୍ମାନ ଜଣାଇ ନିଜେ ମୁଖ୍ୟମନ୍ତ୍ରୀ ନ ହୋଇ ଅନ୍ୟ ଜଣେ ଓଡ଼ିଆ ନେତାଙ୍କୁ ମୁଖ୍ୟମନ୍ତ୍ରୀ କରିବା ଏତେ ସହଜ

ନୁହେଁ। ସିଏ ଏବଂ ତାଙ୍କ ଦଳର ଲୋକେ ଭାଷା ପ୍ରେମରେ ଏତେ ଉଦ୍‌ବୁଦ୍ଧ ହୋଇ ନାହାନ୍ତି ଯେ ଏପରି ଏକ କଠିନ ନିଷ୍ପତ୍ତି ନେଇ ପାରିବେ। ନବୀନ ବାବୁ ଯଦି ସ୍ୱତଃସ୍ଫୂର୍ତ ଭାବେ ଓଡ଼ିଆ ଜାତି ଏବଂ ସେମାନଙ୍କ ମାତୃଭାଷା ଓ ଗଣତାନ୍ତ୍ରିକ ଅଧିକାର ପ୍ରତି ସମ୍ମାନ ଜଣାଇ ନିଜର ମହାନୁଭବତା ପ୍ରଦର୍ଶନ କରିପାରିଲେ ଓଡ଼ିଆ ଜାତି ଚିରଦିନ ପାଇଁ ତାଙ୍କୁ ହୃଦୟରେ ସ୍ଥାନ ଦିଅନ୍ତା। ତା' ନହେଲେ ୪କୋଟି ଓଡ଼ିଆଙ୍କୁ ନିଷ୍ପତ୍ତି ନେବାକୁ ହେବ ଭାଷା ଆଇନ କାର୍ଯ୍ୟକାରୀ କରିବା ପାଇଁ ଆଉ ଜଣେ ଓଡ଼ିଆଙ୍କୁ ମୁଖ୍ୟମନ୍ତ୍ରୀ କରିବେ ନା ନବୀନ ବାବୁଙ୍କୁ ପୁଣି ମୁଖ୍ୟମନ୍ତ୍ରୀ କରି ଓଡ଼ିଆ ଭାଷାକୁ ପ୍ରଶାସନ, କୋର୍ଟକଚେରି ଓ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରୁ ଚିରଦିନ ପାଇଁ ଲୋପ କରିଦେବେ। ଓଡ଼ିଆ ଭାଷା ଆଇନ ରୂପକ କୋଣାର୍କର ମୁଣ୍ଡି ମାରିବା ପାଇଁ ଓଡ଼ିଆମାନଙ୍କୁ ସ୍ଥିର କରିବାକୁ ହେବ 'ବାରଶହ ବଢ଼େଇରେ ଦାୟୀ ନା ପୁଅରେ ଦାୟୀ' ?



# ଆନ୍ତର୍ଜାତିକ ମାତୃଭାଷା ଦିବସର ଆହ୍ୱାନ

ବିଶ୍ୱ ଇତିହାସରେ କେବଳ ସ୍ୱାଧୀନତା, ଗଣତନ୍ତ୍ର ଓ ମାନବିକ ଅଧିକାର ପାଇଁ ବିପ୍ଳବ ବା ଗଣସଂଗ୍ରାମମାନ ଯେ ହୋଇଛି ତା' ନୁହେଁ, ନିଜର ପ୍ରିୟ ମାତୃଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ବି ଯୁଗାନ୍ତକାରୀ ଆନ୍ଦୋଳନମାନ ଘଟିଛି। ଏହିସବୁ ସଂଗ୍ରାମରେ ଏଭଳି ଗୋଟିଏ ଗୋଟିଏ ଘଟଣା ଘଟିଛି ଯାହା ନିର୍ଦ୍ଦିଷ୍ଟ ଏକ ଜାତିର ଗତିପଥକୁ ବଦଳାଇଦେବା ସହିତ ମାନବଜାତିର ଅଗ୍ରଗତି କ୍ଷେତ୍ରରେ ଆଲୋକର ବର୍ତ୍ତିକା ଭଳି କାର୍ଯ୍ୟ କରୁଛି। ସେହିଭଳି ଏକ ଐତିହାସିକ ଘଟଣା ଘଟିଥିଲା ୧୯୫୨ ମସିହା ଫେବୃଆରୀ ୨୧ ତାରିଖରେ ତତ୍କାଳୀନ ପୂର୍ବ ପାକିସ୍ଥାନରେ। ୧୯୪୭ ମସିହାରେ ଧର୍ମ ଭିତ୍ତିରେ ପାକିସ୍ଥାନ ସୃଷ୍ଟି ହେଲାପରେ ସେଠାରେ ଉର୍ଦ୍ଦୁ ଭାଷାକୁ ପାକିସ୍ଥାନର ରାଷ୍ଟ୍ରଭାଷା ରୂପେ ଘୋଷଣା କରାଯାଇଥିଲା। ଉଭୟ ପଶ୍ଚିମ ଓ ପୂର୍ବ ପାକିସ୍ଥାନ (ବାଂଲାଦେଶ) ରେ ଉର୍ଦ୍ଦୁରେ ସମସ୍ତ ସରକାରୀ କାର୍ଯ୍ୟ, ନ୍ୟାୟାଳୟ ଓ ଶିକ୍ଷାଦାନ ଏହି ଭାଷାରେ ଚାଲିବା ପାଇଁ ନିର୍ଦ୍ଦେଶନାମା ଜାରିହେଲା। ଏହାଦ୍ୱାରା ପୂର୍ବ ପାକିସ୍ଥାନ ଅଧିବାସୀମାନଙ୍କର ମାତୃଭାଷା ବଙ୍ଗଳା ଲୋପ ପାଇବାକୁ

ବସିଲା । ସେମାନେ ନିଜର ପ୍ରିୟ ମାତୃଭାଷା ବିରୋଧରେ ପାକିସ୍ତାନର ଏହି ସ୍ୱେଚ୍ଛାଚାରୀ ଷଡଯନ୍ତ୍ରକୁ ରୋକିବା ପାଇଁ ସେଦିନର ପୂର୍ବ ପାକିସ୍ତାନର ବୁଦ୍ଧିଜୀବୀ, ଛାତ୍ର ଓ ଜାତୀୟତାବାଦୀ ରାଜନୈତିକ ଦଳମାନେ ଆଗେଇ ଆସିଥିଲେ । ସେତେବେଳକାର ଉଭୟ ପାକିସ୍ତାନର ମୋଟ ଜନସଂଖ୍ୟା ଥିଲା ୬୯ କୋଟି ଏବଂ ତନ୍ମଧ୍ୟରୁ ୪୪ କୋଟି ଥିଲେ ବଙ୍ଗାଳୀ । ବଙ୍ଗାଳୀମାନେ ବଡ଼ ସ୍ୱାଭିମାନୀ ଜାତି ଏବଂ ନିଜ ମାତୃଭାଷାର ବଡ଼ ଉପାସକ । କଥା କଥାକେ ସେମାନେ ମାତୃଭାଷା ପ୍ରେମରେ ବିଭୋର ହୋଇ କହି ପକାନ୍ତି, "ଆମରି ବାଂଗ୍‌ଲା ଭାଷା, ମୋଦେର ଜୀବନ, ମୋଦେର ଆଶା ।" ସେମାନଙ୍କ ମାତୃଭାଷାକୁ ଧ୍ୱଂସ କରିଦେବା ପାଇଁ ପାକିସ୍ତାନର ଷଡଯନ୍ତ୍ର ବିରୁଦ୍ଧରେ ସେମାନେ ପ୍ରତ୍ୟକ୍ଷ ଆନ୍ଦୋଳନ ଆରମ୍ଭ କରିଦେଲେ । ଧର୍ମର ଆକର୍ଷଣ ଅପେକ୍ଷା ମାତୃଭାଷା ପ୍ରତି ପ୍ରେମ ସେମାନଙ୍କୁ ଅଧିକ ଆକୃଷ୍ଟ କରିଥିଲା । ପାକିସ୍ତାନ ସରକାରର ବଙ୍ଗଳା ଭାଷା ବିରୋଧୀ ନୀତି ବିରୁଦ୍ଧରେ ପୂର୍ବ ପାକିସ୍ତାନ ବିଧାନସଭାରେ ଏକ ପ୍ରସ୍ତାବ ପାସ୍‌କରି ବଙ୍ଗଳା ଭାଷାକୁ ସରକାରୀ ଭାଷା ତଥା ଶିକ୍ଷାର ମାଧ୍ୟମ ରୂପେ ଘୋଷଣା କରାଗଲା ।

ପାକିସ୍ତାନର ସ୍ୱେଚ୍ଛାଚାରୀ ସରକାର ପୂର୍ବ ପାକିସ୍ତାନରେ ମୁଣ୍ଡ ଟେକି ଉଠୁଥିବା ଭାଷା ସୁରକ୍ଷା ଆନ୍ଦୋଳନକୁ ଦବେଇ ଦେବାପାଇଁ ସବୁ ପ୍ରକାର ଦମନମୂଳକ ଆକ୍ରମଣ ଆରମ୍ଭ କରିଦେଲା । ଯାହା ଫଳରେ ଶହଶହ ଲୋକ କ୍ଷତ ବିକ୍ଷତ ହେଲେ ଓ ହଜାର ହଜାର ଛାତ୍ର, ଯୁବକ ବୁଦ୍ଧିଜୀବୀ ଓ ସାଧାରଣ ଲୋକଙ୍କୁ ଗିରଫ କରାଗଲା । ଏହାଦ୍ୱାରା ଭାଷା ଆନ୍ଦୋଳନ ଦବି ନ ଯାଇ ପୂର୍ବ ପାକିସ୍ତାନର ରାଜଧାନୀ ଢ଼ାକାରୁ ଅନ୍ୟ ସହରକୁ ବ୍ୟାପିବାକୁ ଲାଗିଲା । ଆନ୍ଦୋଳନର କେନ୍ଦ୍ରବିନ୍ଦୁ ଥିଲା ଢାକାର ବିଭିନ୍ନ ବିଶ୍ୱବିଦ୍ୟାଳୟ, ଇଂଜିନିୟରିଂ ଓ ମେଡ଼ିକାଲ କଲେଜଗୁଡ଼ିକ । ଫେବୃଆରୀ ୨୧ ତାରିଖ ଦିନ ସମଗ୍ର ଢ଼ାକା ସହରକୁ ଅଚଳ କରିଦେବା ପାଇଁ ଧର୍ମଘଟର ଡାକରା ଦିଆଗଲା । ସରକାରଙ୍କ ଦ୍ୱାରା ଜାରି କରାଯାଇଥିବା ନିଷେଧାଜ୍ଞାକୁ ଭଙ୍ଗ କରି ଲକ୍ଷ ଲକ୍ଷ ଛାତ୍ରଛାତ୍ରୀ ଶୋଭାଯାତ୍ରାରେ ବାହାରି ପ୍ରାଦେଶିକ ବିଧାନସଭା ଆଡ଼କୁ ଆଗେଇ ଯାଇଥିଲେ । ଅବସ୍ଥା ଅସମ୍ଭାଳ ହେବାରୁ ପାକିସ୍ତାନୀ ଅର୍ଦ୍ଧ ସାମରିକ ବାହିନୀ ଆକ୍ରମଣ ଆରମ୍ଭ କରିଦେଲା । ଫଳରେ ଘଟଣାସ୍ଥଳରେ ଚାରିପାଞ୍ଚଜଣ ଛାତ୍ରଙ୍କର ମୃତ୍ୟୁ ଘଟିଥିଲା ଏବଂ ହଜାର ହଜାର ଛାତ୍ରଛାତ୍ରୀ ଗୁରୁତର ଭାବେ ଆହତ ହୋଇଥିଲେ । ବଣର ନିଆଁପରି ଭାଷା ସୁରକ୍ଷା ଆନ୍ଦୋଳନ ସମଗ୍ର ପୂର୍ବ ପାକିସ୍ତାନରେ ବ୍ୟାପି ଯାଇଥିଲା ।

ଆନ୍ଦୋଳନର ବ୍ୟାପକତା ଓ ତୀବ୍ରତାକୁ ଲକ୍ଷ୍ୟ କରି ପାକିସ୍ତାନର ସମ୍ବିଧାନ ପ୍ରଣୟନକାରୀ ସଭା ଉର୍ଦ୍ଦୁ ସହିତ ବଙ୍ଗଳାକୁ ପାକିସ୍ତାନର ଜାତୀୟ ଭାଷାରୂପେ ସ୍ୱୀକୃତି

ପ୍ରଦାନ କଲା। ସେହିଦିନଠାରୁ ପୂର୍ବ ପାକିସ୍ଥାନର ପ୍ରଶାସନିକ, ନ୍ୟାୟିକ ଓ ଶିକ୍ଷାଦାନର କାର୍ଯ୍ୟ ଚାଲିଲା ବଙ୍ଗଳା ଭାଷାରେ। ଏହା କେବଳ ପାକିସ୍ଥାନର ବଙ୍ଗାଳୀମାନଙ୍କ ପାଇଁ ନୁହେଁ ପୃଥିବୀର ସମସ୍ତ ବଙ୍ଗଭାଷୀମାନଙ୍କ ପାଇଁ ଥିଲା ଏକ ଐତିହାସିକ ବିଜୟ। ଏହି ଘଟଣାଟି ପୂର୍ବ ପାକିସ୍ଥାନରେ ସଂଗଠିତ ପରବର୍ତ୍ତୀ ବହୁ ଗଣସଂଗ୍ରାମ ପାଇଁ ପ୍ରେରଣାର ଉତ୍ସରେ ପରିଣତ ହୋଇଥିଲା। ପାକିସ୍ଥାନରୁ ମୁକ୍ତହୋଇ ସ୍ୱାଧୀନ ବାଂଲାଦେଶ ପ୍ରତିଷ୍ଠା ହେଲା ପର୍ଯ୍ୟନ୍ତ ଯେଉଁ ବୈପ୍ଲବିକ ପ୍ରକ୍ରିୟାର ସୂତ୍ରପାତ ହୋଇଥିଲା ତା'ର ଶୁଭାରମ୍ଭ ଘଟିଥିଲା ଏହି ଭାଷା ସୁରକ୍ଷା ଆନ୍ଦୋଳନ ମଧ୍ୟରୁ। ଏହି ସଂଗ୍ରାମର ସ୍ଫୁଲିଙ୍ଗ କ୍ରମଶଃ ବାଂଲାଦେଶର ବୈପ୍ଲବିକ ଜାତୀୟ ମୁକ୍ତି ସଂଗ୍ରାମରେ ପରିଣତ ହୋଇଥିଲା। ଶେଷକୁ ବାଂଲାଦେଶ ପାକିସ୍ତାନରୁ ସଂପୂର୍ଣ୍ଣ ରୂପେ ଅଲଗା ହୋଇଗଲା। ବଂଗଳା ହେଲା ବାଂଲାଦେଶର ସରକାରୀ ଭାଷା।

୧୯୫୬ ମସିହାରେ ଆୱାମି ଲିଗ୍ ସରକାର ପୂର୍ବ ପାକିସ୍ଥାନରେ କ୍ଷମତାକୁ ଆସିଲା ପରେ ମୁଖ୍ୟମନ୍ତ୍ରୀ ଆତାଉର ରହମନ ଖାଁ ନିର୍ଦ୍ଦେଶ ଦେଇଥିଲେ ୧୯୫୨ ଫେବୃଆରୀ ୨୧ ଭାଷା ଆନ୍ଦୋଳନରେ ସହୀଦ ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ଏକ ସହୀଦ ମିନାର ଢ଼ାକାରେ ନିର୍ମାଣ କରିବା ପାଇଁ। ତତ୍‌କାଳୀନ ପୂର୍ବ ପାକିସ୍ଥାନର ପ୍ରଖ୍ୟାତ ସ୍ଥପତି ହମିଦୁର ରହମନ ଏହାକୁ ଏପରି ବହୁରଙ୍ଗ ମଣ୍ଡିତ କାଚ ଦ୍ୱାରା ନିର୍ମାଣ କରିଛନ୍ତି ଯେ ସୂର୍ଯ୍ୟକିରଣ ତା' ଉପରେ ପ୍ରତିଫଳିତ ହେଲେ ଦିନର ବିଭିନ୍ନ ସମୟରେ ଏହା ଭିନ୍ନଭିନ୍ନ ରଂଗରେ ବର୍ଣ୍ଣିଳ ହୋଇଉଠେ। ପୃଥିବୀର ବିଭିନ୍ନ ଦେଶରୁ ଆସୁଥିବା ହଜାର ହଜାର ପର୍ଯ୍ୟଟକ ଓ ରାଷ୍ଟ୍ରନେତାମାନେ ଆସି ଏଇ ସ୍ମୃତିସ୍ତମ୍ଭ ଦେଖି ଆତ୍ମହରା ହୋଇପଡ଼ନ୍ତି। ନିଜର ପ୍ରିୟ ମାତୃଭାଷାକୁ ରକ୍ଷାକରିବା ପାଇଁ ଗୋଟାଏ ଜାତି ବିଶେଷକରି ଛାତ୍ର ଯୁବକମାନେ ଏପରି ଆତ୍ମବଳି ଦେଇପାରନ୍ତି ଦେଖି ସେମାନଙ୍କ ମୁଣ୍ଡ ନଇଁଯାଏ। ମନରେ ଉଚ୍ଛୁଳି ଉଠେ ନିଜର ମାତୃଭାଷା ଓ ମାତୃଭୂମି ପାଇଁ ଅସରନ୍ତି ମମତା। ଯେଉଁ ଜାତି ତା'ର ମାତୃଭାଷା ଓ ସ୍ୱାଭିମାନ ପାଇଁ ପ୍ରାଣ ଦେଇପାରେ ସିଏ କେବେ ପରାଜିତ ହୁଏନାହିଁ କି ତା'ର ଭାଷା ସଂସ୍କୃତିର କେବେ ବିଲୟ ଘଟେ ନାହିଁ।

ଆଧୁନିକ ମାନବ ସମାଜର ଇତିହାସରେ ନିଜର ମାତୃଭାଷା ପାଇଁ ଏଭଳି ଆତ୍ମବଳିଦାନ ଓ ଏହାର ପ୍ରେରଣାମୟ ସ୍ମୃତିକୁ ସମ୍ମାନଦେଇ ୟୁନେସ୍କୋର ସଦସ୍ୟ ରାଷ୍ଟ୍ରମାନେ ୧୯୯୯ ନଭେମ୍ବର ୧୭ ତାରିଖରେ ଫେବୃଆରୀ ୨୧କୁ ଆନ୍ତର୍ଜାତିକ ମାତୃଭାଷାରୂପେ ଘୋଷଣା କରିଥିଲେ। ୨୦୦୮ ମସିହାରେ ଜାତିସଂଘ ଏହାକୁ ସାରା ବିଶ୍ୱରେ ପାଳନ କରିବା ପାଇଁ ଆନୁଷ୍ଠାନିକଭାବେ ସ୍ୱୀକୃତି ପ୍ରଦାନ କରିଥିଲା।

ଆମ ପୃଥିବୀରେ ବହୁ ଭାଷା ଓ ସଂସ୍କୃତି ବିଦ୍ୟମାନ। ମଣିଷର ଆଦିମ ସୃଷ୍ଟି ହେଉଛି ଭାଷା। ତା'ର ସାମାଜିକ, ଅର୍ଥନୈତିକ ଏବଂ ବୌଦ୍ଧିକ କାର୍ଯ୍ୟକଳାପର ବିକାଶ ସହିତ ତା' ଭାଷାର ବିକାଶ ଘଟିଥାଏ। ପ୍ରତ୍ୟେକ ଜାତିର ପରିଚୟ ହେଉଛି ତା'ର ଭାଷା। ଭାଷା ହେଉଛି ଜାତିର ସବୁଠାରୁ ବଡ଼ ସଂପଦ। ଭାଷା ମରିଗଲେ ଜାତି ମରିଯାଏ। ଗୋଟିଏ ଜାତି ଉପରେ ଅନ୍ୟ ଏକ ଜାତିର ଭାଷାକୁ ଲଦିଦେବା ହେଉଛି ଏକ ସାମ୍ରାଜ୍ୟବାଦୀ ବିଚାରଧାରା। ଔପନିବେଶିକ ଯୁଗରେ ୟୁରୋପର ଉପନିବେଶୀ ଶାସକମାନେ ଏସିଆ, ଆଫ୍ରିକାର ବହୁ ଭାଷାକୁ ମାରିଦେଇଛନ୍ତି କିମ୍ବା ସେସବୁ ଉପରେ ଇଂରେଜୀ, ଫରାସୀ, ପର୍ତ୍ତୁଗୀଜ ଭାଷାକୁ ଚପେଇ ଦେଇଛନ୍ତି। ଉପନିବେଶଗୁଡ଼ିକୁ ଶାସନ କରିବାର ଅସ୍ତ୍ର ରୂପେ ସେମାନେ ନିଜ ଭାଷାକୁ ବ୍ୟବହାର କରିଛନ୍ତି। ଏବେ ଜଗତୀକରଣ ଯୁଗରେ ପୃଥିବୀର ତଥାକଥିତ ପ୍ରଭାବଶାଳୀ ଭାଷାମାନେ ଛୋଟ ଛୋଟ ଭାଷାମାନଙ୍କୁ ଗ୍ରାସ କରିଦେବାକୁ ବସିଛନ୍ତି ଓ ସେମାନଙ୍କ ଅଗ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରୁଛନ୍ତି। ଫଳରେ ପୃଥିବୀର ୬ ହଜାରରୁ ଅଧିକ ଭାଷା ମଧ୍ୟରୁ ଅର୍ଦ୍ଧେକ ଭାଷା ଆଜି ବିପଦାପନ୍ନ। ଏହି ନକାରାତ୍ମକ ପ୍ରକ୍ରିୟାକୁ ରୋକିବା ପାଇଁ ଜାତିସଂଘ ସର୍ବଦା ଆହ୍ୱାନ ଦେଇ ଆସିଛି। ପ୍ରତ୍ୟେକ ଭାଷାକୁ ବଂଚାଇ ରଖିବା ଏବଂ ଭାଷାଗତ ଓ ସାଂସ୍କୃତିକ ବିବିଧତାକୁ ପ୍ରୋତ୍ସାହିତ କରିବା ସହିତ ପ୍ରତ୍ୟେକ ମାତୃଭାଷାର ସୁରକ୍ଷା ଓ ବିକାଶ କରିବା ଆନ୍ତର୍ଜାତିକ ଭାଷା ଦିବସର ଆହ୍ୱାନ। ଏହି ଆହ୍ୱାନ ଭାରତର ଜାତୀୟ ଭାଷାମାନଙ୍କର ସୁରକ୍ଷା ଏବଂ ଔପନିବେଶିକ ଗୋଲାମୀର ପ୍ରତୀକ ଇଂରେଜୀ ଭାଷା କବଳରୁ ଆମର ମାନସିକତାକୁ ମୁକ୍ତ କରି ନିଜର ମାତୃଭାଷାକୁ ସମ୍ମାନ ଦେବା ପାଇଁ ସର୍ବଦା ପ୍ରେରଣା ଯୋଗାଇଥାଏ।

ଭାଷା ହେଉଛି ସାହିତ୍ୟର ଜନନୀ। ଏକ ଦୁର୍ବଳ ମା'ଠାରୁ ସବଳ ସନ୍ତାନ ଆଶା କରିବା ଭୁଲ। ଭାଷା ଦୁର୍ବଳ ହୋଇଗଲେ ଉନ୍ନତ ସାହିତ୍ୟ ସୃଷ୍ଟି ହୁଏନାହିଁ। ବିଦେଶୀ ଭାଷା ମାଧ୍ୟମରେ ସ୍କୁଲ କଲେଜ ବିଶ୍ୱ ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ପିଲାମାନେ ଆଗାମୀ ଦିନରେ ନିଜ ମାତୃଭାଷାରେ ଉନ୍ନତ ସାହିତ୍ୟ ସୃଷ୍ଟିକରି ପାରିବେ ନାହିଁ। କାରଣ ଭାଷା ନ ଜାଣିଲେ ସାହିତ୍ୟ ସୃଷ୍ଟି କରିହୁଏ ନାହିଁ। ମାତୃଭାଷା ମାଧ୍ୟମରେ ଶିକ୍ଷାଲାଭ କରିବା ସହିତ ସେମାନେ ବିଦେଶୀ ଭାଷା ଶିଖିଲେ ଅଧିକ ଲାଭବାନ ହେବେ। ଏକଦା ଉପନିବେଶବାଦର ଶିକାର ହୋଇଥିବା ଆଫ୍ରିକା, ଏସିଆ ଆଦି ଦେଶମାନେ ଇଂରେଜୀ, ଫରାସୀ, ରୁଷ ବା ଚୀନ ଭାଷାକୁ ବିଦେଶୀ ଭାଷା ହିସାବରେ ଶିଖିଲା ବେଳେ ନିଜ ମାତୃଭାଷା ଉପରେ ଗୁରୁତ୍ୱାରୋପ କରୁଛନ୍ତି।

ସ୍ୱାଧୀନତା ଆନ୍ଦୋଳନ ବେଳେ ଗାନ୍ଧିଜୀ ସର୍ବଦା ଭାରତୀୟ ଭାଷାମାନଙ୍କର

ବିକାଶ ଉପରେ ଗୁରୁତ୍ୱ ଦେଉଥିଲେ । ସେ କହୁଥିଲେ ସ୍ୱାଧୀନତାର ଅର୍ଥ ହେଉଛି ଲୋକଙ୍କ ଭାଷାରେ ଲୋକଙ୍କ ଶାସନ । ଲୋକଙ୍କ ଭାଷାରେ ଅର୍ଥାତ୍ ନିଜ ମାତୃଭାଷାରେ ଶାସନ, ନ୍ୟାୟାଳୟ, ବ୍ୟବସାୟ ବାଣିଜ୍ୟ ଓ ଶିକ୍ଷା ବ୍ୟବସ୍ଥା ନ ଚାଲିଲେ ଲୋକଙ୍କ ଶାସନ ପ୍ରତିଷ୍ଠା ହୋଇ ପାରିବ ନାହିଁ । ସ୍ୱାଧୀନତା ପରେ ଭାରତର ରାଜ୍ୟମାନେ ଇଂରେଜୀ ପରିବର୍ତ୍ତେ ନିଜ ନିଜର ମାତୃଭାଷାକୁ ରାଜଭାଷା ରୂପେ ଗ୍ରହଣ କରି ପ୍ରଶାସନିକ, ନ୍ୟାୟାଳୟ, ଶିକ୍ଷା ତଥା ବିଧାନସଭାରେ ବ୍ୟବହାର କରିଥିଲେ । ଆମ ଓଡ଼ିଶାରେ ୧୯୫୪ ମସିହାରେ ପୂଣ୍ୟାତ୍ମା ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶାର ବରପୁତ୍ରମାନେ ମଧ ବିଧାନସଭାରେ ଐତିହାସିକ ସରକାରୀ ଭାଷା ଆଇନ ପ୍ରଣୟନ କରିଥିଲେ । କିନ୍ତୁ ତାହାକୁ ଏଯାଏ କାର୍ଯ୍ୟକାରୀ କରାଯାଇ ନାହିଁ । ଯା' ଫଳରେ ଲୋକଙ୍କ ଭାଷାରେ ଲୋକଙ୍କ ଶାସନ ପ୍ରତିଷ୍ଠା ହୋଇ ପାରିନାହିଁ । ଓଡ଼ିଶା ସରକାର ତଥା ରାଜନୈତିକ ଦଳମାନେ ଏଥିପ୍ରତି ଧ୍ୟାନ ଦେଇ ନାହାନ୍ତି । ଫଳରେ ଭାଷାର ବ୍ୟବହାର ସଂକୁଚିତ ହେବାରୁ ଏହାର ଅବକ୍ଷୟ ଘଟିଛି । ଭାଷା ପ୍ରତି ସବୁ କ୍ଷେତ୍ରରେ ହତାଦର ବଢ଼ିଛି । ନିର୍ବାଚନ ସର୍ବସ୍ୱ ରାଜନୀତିରେ ହୀନିମାନୀ ଓଡ଼ିଆ ଭାଷାର ସୁରକ୍ଷା ଏ ପର୍ଯ୍ୟନ୍ତ ନର୍ବାଚନୀ ପ୍ରସଙ୍ଗ ହୋଇପାରିନି । ଯା' ଫଳରେ ରାଜନୀତିର ଯୂପକାଠରେ ମାତୃଭାଷା ଆଜି ବଳି ପଡ଼ିଯାଉଛି । ଅନ୍ୟ ଦିଗରେ ଓଡ଼ିଶାରେ ସବୁକାର୍ଯ୍ୟ ଇଂରେଜୀରେ ଚାଲୁଥିବା ହେତୁ ଓଡ଼ିଆରେ ଉଚ୍ଚଶିକ୍ଷା ଲାଭ କରିଥିବା ଓଡ଼ିଆ ଯୁବକମାନଙ୍କ ପାଇଁ ନିଜ ମାତୃଭାଷା ଜୀବନ ଜୀବିକାର ଭାଷା ହୋଇ ପାରିନି । ତେଣୁ ସେମାନେ ଓଡ଼ିଆ ପଢ଼ିବାକୁ ଆଗ୍ରହ ପ୍ରକାଶ କରୁ ନାହାନ୍ତି । ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ସେମାନଙ୍କ ପାଇଁ ମୂଲ୍ୟହୀନ ହୋଇପଡ଼ିଛି । ଏପରି ଘଟିବା ପଛରେ କାରଣଟି ହେଉଛି ଆମର ବର୍ତ୍ତମାନର ଭାଷାନୀତି । ବର୍ତ୍ତମାନ ଭାଷା ନୀତିର ମୂଳଲକ୍ଷ୍ୟ ହେଲା ଇଂରେଜୀ ଭାଷାକୁ ପ୍ରୋତ୍ସାହନ ଦେବା– ସବୁ ସ୍ତରରେ ଇଂରେଜୀ ଭାଷାର ବ୍ୟାପକ ବ୍ୟବହାର କରିବା ଓ ଶାସନ କ୍ଷେତ୍ରରେ ଏହାର ପ୍ରାଧାନ୍ୟକୁ ବଜାୟ ରଖିବା । ଅନୁସନ୍ଧାନରୁ ଜଣାଯାଏ, ଗତ ୧୫ ବର୍ଷ ମଧ୍ୟରେ ଓଡ଼ିଶାରେ ସର୍ବାଧିକ ଇଂରେଜୀ ମାଧ୍ୟମ ବିଦ୍ୟାଳୟଗୁଡ଼ିକର ଆବିର୍ଭାବ ଘଟିଛି । ଓଡ଼ିଆ ମାଧ୍ୟମ ସ୍କୁଲଗୁଡ଼ିକରେ ଓଡ଼ିଆ ଶିକ୍ଷାର ମାନ ଦୟନୀୟ ସ୍ଥିତିରେ ପହଂଚିଛି । ଏହି ନୀତିର ପରିବର୍ତ୍ତନ ନହେଲେ ଓଡ଼ିଆ ଭାଷାର ଭବିଷ୍ୟତ ଅନ୍ଧକାରମୟ ହେବ । ଏହି ଭାଷା ନୀତିକୁ ବଦଳାଇବା ପାଇଁ ଓଡ଼ିଶାରେ ଭାଷା ସୁରକ୍ଷା ସମ୍ମିଳନୀ ଗତ କେତେ ବର୍ଷଧରି ଏକ ଭାଷା ଆନ୍ଦୋଳନ ଚଳାଇ ଆସିଛି । ଏହା ଫଳରେ ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟ ଚେତନା ଓ ଭାଷାଗତ ଆବେଗ ସୃଷ୍ଟି ହୋଇଛି । ଭାଷା ଆନ୍ଦୋଳନ ଚାପରେ ସରକାର କେତେକ ପଦକ୍ଷେପ ନେବାକୁ

ଘୋଷଣା କରିଛନ୍ତି। କିନ୍ତୁ ୧୯୫୪ ମସିହାର ଭାଷା ଆଇନକୁ ତୁରନ୍ତ କାର୍ଯ୍ୟକାରୀ ନକଲେ ସେସବୁ ଘୋଷଣାର କୌଣସି ସୁଫଳ ମିଳିବ ନାହିଁ।

ମାତୃଭାଷାର ସୁରକ୍ଷା ଓ ମର୍ଯ୍ୟାଦା ପାଇଁ ବାଂଲାଦେଶର ଶହୀଦମାନଙ୍କର ଆତ୍ମବଳି ଏବଂ ଆନ୍ତର୍ଜାତିକ ଭାଷା ଦିବସର ଆହ୍ୱାନ ଆଜି ପୃଥିବୀର ପ୍ରତ୍ୟେକ ଜାତି ପାଖରେ ନିଜ ମାତୃଭାଷାର ସୁରକ୍ଷା ପାଇଁ ସଂଗ୍ରାମ କରିବାକୁ ଅନୁପ୍ରେରଣା ଯୋଗାଉଛି। ଓଡ଼ିଆ ଭାଷାର ସୁରକ୍ଷା ଓ ବିକାଶ ପାଇଁ ପ୍ରତ୍ୟେକ ଭାଷାପ୍ରେମୀ ଓଡ଼ିଆ ଆଜି ଭାଷା ସୁରକ୍ଷା ଆନ୍ଦୋଳନରେ ଅଂଶ ହୁଅନ୍ତୁ, ନିଜେ ଓଡ଼ିଆ ଶିଖିବା, କହିବା ସାଙ୍ଗକୁ ସରକାର ତଥା ରାଜନୈତିକ ଦଳମାନଙ୍କୁ ବାଧ୍ୟ କରନ୍ତୁ ଓଡ଼ିଆ ଭାଷାକୁ ଓଡ଼ିଶାରେ ସର୍ବୋଚ୍ଚ ସମ୍ମାନ ଓ ସୁରକ୍ଷା ଦେବାପାଇଁ।



# ଭାଷା ଆନ୍ଦୋଳନ ଓ ଭାଷା ଆଇନର ଅନିଶ୍ଚିତତା

ଓଡ଼ିଆମାନଙ୍କ ମଧ୍ୟରେ ହଜି ଯାଇଥିବା ଜାତୀୟତାବୋଧ, ସ୍ୱାଭିମାନ ଏବଂ ଭାଷାପ୍ରେମକୁ ପୁନଃଜାଗ୍ରତ କରିବା ସହିତ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟବ୍ୟାପୀ ଆନ୍ଦୋଳନ କରିବାକୁ ୨୦୧୩ ଜୁଲାଇ ୧ ତାରିଖରେ ଜନ୍ମ ନେଇଥିଲା 'ଭାଷା ସୁରକ୍ଷା ସମ୍ମିଳନୀ'। ଏହା ପୂର୍ବରୁ ୨୦୧୨ରେ ପୂର୍ବତନ ସାଂସଦ ବୈଷ୍ଣବ ପରିଡାଙ୍କ ସହିତ ଡ. କୃଷ୍ଣ ଚରଣ ବେହେରା, ଡ. ବିଜୟାନନ୍ଦ ସିଂ, ଡ. ସାତକଡି ହୋତା, ପ୍ରଫେସର ଧନେଶ୍ୱର ମହାପାତ୍ର, ଡ. ନଟବର ଶତପଥୀ, ବରେନ୍ଦ୍ର କୃଷ୍ଣ ଧଳ ପ୍ରମୁଖ ଭାଷାପ୍ରେମୀ ବୁଦ୍ଧିଜୀବୀ, ଲେଖକମାନେ ଆଲୋଚନାଚକ୍ର ଓ ଲେଖା ମାଧ୍ୟମରେ ରାଜ୍ୟବାସୀଙ୍କୁ ବୁଝାଇବାକୁ ଚେଷ୍ଟା କରିଥିଲେ ଭାଷା ଆଇନ କାର୍ଯ୍ୟକାରୀ ନହେବା ଫଳରେ ଓଡ଼ିଆ ଜନଜୀବନର ବିଭିନ୍ନ କ୍ଷେତ୍ରରେ ଓଡ଼ିଆ ଭାଷାର ବ୍ୟବହାର କିପରି ହ୍ରାସ ପାଇବାରେ ଲାଗିଛି। ପ୍ରଶାସନ, ନ୍ୟାୟାଳୟ, ବ୍ୟବସାୟ ବାଣିଜ୍ୟ ପ୍ରତିଷ୍ଠାନର କାର୍ଯ୍ୟ ଇଂରେଜୀରେ ଚାଲିବା ହେତୁ ଓଡ଼ିଆ ପିଲାମାନେ ଓଡ଼ିଆ ଭାଷା ଶିଖିବାକୁ ଆଗ୍ରହ

ପ୍ରକାଶ କରୁନାହାନ୍ତି । ଓଡ଼ିଆ ଭାଷାରେ ଶାସନ ନ ଚାଲିବା ହେତୁ ରାଜ୍ୟର ଉପାନ୍ତ ଜିଲ୍ଲାମାନଙ୍କରେ ପ୍ରତିବେଶୀ ରାଜ୍ୟମାନଙ୍କର ଭାଷାର ପ୍ରଭାବ ବଢ଼ିବାରେ ଲାଗିଛି । ଓଡ଼ିଆ ସାହିତ୍ୟର ପାଠକ ସଂଖ୍ୟା କ୍ରମଶଃ କମିକମି ଗଲାଣି । ଏଭଳି ଏକ ନକରାତ୍ମକ ପ୍ରକ୍ରିୟାରୁ ମାତୃଭାଷାକୁ ରକ୍ଷା କରି ଅନ୍ୟ ରାଜ୍ୟ ପରି ଓଡ଼ିଆମାନଙ୍କୁ ଓଡ଼ିଆ ଭାଷାରେ ଶାସନ ନ୍ୟାୟ ପାଇବା ପାଇଁ ଊନବିଂଶ ଶତାବ୍ଦୀର ୭୦/୮୦ ଦଶକ ପରି ପୁଣି ଏକ ଭାଷା ସୁରକ୍ଷା ଆନ୍ଦୋଳନ ଜରୁରୀ ହୋଇପଡ଼ିଛି । ଏହି ଆନ୍ଦୋଳନର ନେତୃତ୍ୱ ନେବାକୁ ୨୦୧୩ ଜୁଲାଇ ୧ ତାରିଖରେ ଭୁବନେଶ୍ୱରସ୍ଥ ଜୟଦେବ ଭବନରେ ସୁସାହିତ୍ୟିକ ସାତକଡ଼ି ହୋତାଙ୍କ ସଭାପତିତ୍ୱରେ ଏକ ଏକଦିବସୀୟ ରାଜ୍ୟସ୍ତରୀୟ ସମ୍ମିଳନୀର ଆୟୋଜନ କରାଯାଇଥିଲା ଓ ଓଡ଼ିଆ ଭାଷାର ସୁରକ୍ଷା ଏବଂ ଭାଷା ଆଇନର କାର୍ଯ୍ୟାୟନ ସମେତ ୧୦ଦଫା ଦାବୀପତ୍ର ଗୃହୀତ ହୋଇଥିଲା । ତା'ପରେ ଆରମ୍ଭ ହୋଇଥିଲା ରାଜ୍ୟବ୍ୟାପୀ ଭାଷା ସଚେତନତା ଅଭିଯାନ ସହିତ ଏହିସବୁ ଦାବିକୁ କାର୍ଯ୍ୟକାରୀ କରିବା ପାଇଁ ସରକାରଙ୍କ ପାଖରେ ନିବେଦନ । ମୁଖ୍ୟମନ୍ତ୍ରୀଙ୍କୁ ଲକ୍ଷେ ପୋଷ୍ଟକାର୍ଡ ଚିଠି ଲେଖିବା ଠାରୁ ଆରମ୍ଭ କରି ଭୁବନେଶ୍ୱର ସମେତ ରାଜ୍ୟସାରା ସଭା, ସମ୍ମିଳନୀ, ଆଲୋଚନାଚକ୍ର, ଧାରଣା, ଅନଶନ, ବିକ୍ଷୋଭ, ମଶାଲ ଶୋଭାଯାତ୍ରା ଓ ରାଜ୍ୟପାଳଙ୍କୁ ଦାବୀପତ୍ର ପ୍ରଦାନ ଆଦି କରାଯାଇଥିଲା ।

ଲୋକଙ୍କ ମଧ୍ୟରେ ଭାଷା ସୁରକ୍ଷା ଆନ୍ଦୋଳନ ପ୍ରତି ଅଭୂତପୂର୍ବ ସମର୍ଥନ ଦେଖି ବହୁ ବିଶିଷ୍ଟ ବ୍ୟକ୍ତି ଓ ଅନୁଷ୍ଠାନ ଏଥିରେ ଯୋଗ ଦେଇଥିଲେ । 'ଆମ ଭାଷା ହେଉଛି ଆମର ପରିଚୟ ଏବଂ ଭାଷା ମରିଗଲେ ଜାତି ମରିଯିବ'- ଏହି ମର୍ମ କଥାଟିକୁ ଅନୁଭବ କରି ରାଜ୍ୟର ବହୁ ରାଜନୈତିକ ଦଳର ନେତୃବୃନ୍ଦ ଓ କର୍ମୀମାନେ ଆନ୍ଦୋଳନକୁ ସମର୍ଥନ କରି ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । କିନ୍ତୁ ରାଜ୍ୟ ସରକାର ଏହାକୁ ପ୍ରଥମରୁ ନିଜ ମାତୃଭାଷାର ସୁରକ୍ଷା ଆନ୍ଦୋଳନ ଭାବେ ବିଚାର ନକରି ଏକ ସରକାରୀ ବିରୋଧୀ, ବିଶେଷ କରି ମୁଖ୍ୟମନ୍ତ୍ରୀଙ୍କ ବିରୋଧରେ, ଆନ୍ଦୋଳନ ବୋଲି ଚିତ୍ରଣ କରିଥିଲେ । ଆଉ କେତେକ ରାଜ୍ୟର ଇଂରେଜୀ ପ୍ରେମୀ ମଧ୍ୟବିତ୍ତ ଶ୍ରେଣୀକୁ ଭୟଭୀତ କରିବା ପାଇଁ ଏହାକୁ ଇଂରେଜୀ ବିରୋଧୀ ଆନ୍ଦୋଳନ ବୋଲି କହିଥିଲେ । ଏସବୁ ସତ୍ତ୍ୱେ ଆନ୍ଦୋଳନ ପ୍ରତି ଭାଷାପ୍ରେମୀ ଓଡ଼ିଆମାନଙ୍କର ସମର୍ଥନ ବୃଦ୍ଧି ପାଇଥିଲା । ଆନ୍ଦୋଳନର ଚାପରେ ସରକାର ବିଧାନସଭାର କାର୍ଯ୍ୟ ଭାଷା ଆଇନ ଅନୁଯାୟୀ ଓଡ଼ିଆରେ କରିବାକୁ ବାଧ୍ୟ ହୋଇଥିଲେ । ୧୯୫୪ ସରକାରୀ ଭାଷା ଆଇନର କେତେକ ପରିବର୍ତ୍ତନ ଆଣି ଏହାକୁ କାର୍ଯ୍ୟକାରୀ କରିବା ପାଇଁ ୧୩ ଅଗଷ୍ଟ ୨୦୧୬ରେ ଜଣେ ଯୁଗ୍ମ ସଚିବଙ୍କ ଅଧ୍ୟକ୍ଷତାରେ ଏକ ଭାଷା

ଡିଭିଜନ ମଧ୍ୟ ଗଠନ କରିଦେଲେ। ଭାଷା ଆଇନକୁ କାର୍ଯ୍ୟକାରୀ ନ କରିବା ପାଇଁ ଏହା ଥିଲା ସରକାରଙ୍କର ଏକ ଛଳନାତ୍ମକ କାର୍ଯ୍ୟ। କାରଣ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଅନ୍ୟ ରାଜ୍ୟମାନଙ୍କ ପରି ଏକ କ୍ଷମତାସଂପନ୍ନ ଭାଷା ଆୟୋଗ ଗଠନ କରିବା ପରିବର୍ତ୍ତେ ଏକ କ୍ଷମତା ବିହୀନ ଭାଷା ଡିଭିଜନ ଗଠନ କୌଣସି କାମକୁ ଆସିଲା ନାହିଁ। କାରଣ ଯୁଗ୍ମ ସଚିବ ତାଙ୍କ ଉପରେ ଥିବା ବଡ଼ବଡ଼ ଅଧିକାରୀଙ୍କ ବିରୋଧରେ ଦଣ୍ଡବିଧାନ ତ ଦୂରର କଥା ସେମାନଙ୍କ କାର୍ଯ୍ୟକୁ ତଦାରଖ କରିବାକୁ ସାହସ କରିଲେ ନାହିଁ। ଲୋକଙ୍କୁ ଭୁଲେଇବା ପାଇଁ ସରକାର ଏହି ଭାଷା ଡିଭିଜନ କରିଥିଲେ  ବୋଲି ସମସ୍ତେ ବୁଝିପାରିଲେ। 'ଭାଷା ସୁରକ୍ଷା ସମ୍ମିଳନୀ' ସରକାରଙ୍କର ପ୍ରତାରଣାପୂର୍ଣ୍ଣ କାର୍ଯ୍ୟର ବିରୋଧରେ ରାଜ୍ୟରେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିଥିଲା। ଏହାଦ୍ୱାରା ସରକାର ପୁଣି ଅକଳିଆରେ ପଡ଼ିଗଲେ। ଭାଷା ଆଇନକୁ କାର୍ଯ୍ୟକାରୀ କରିବାର ଦାବୀରୁ ଲୋକଙ୍କ ଦୃଷ୍ଟିକୁ ଦୂରେଇ ନେବା ପାଇଁ ୨୦୧୭ ଡିସେମ୍ବର ୨୬ ତାରିଖରେ ପୁରୀରେ ଓଡ଼ିଆ ଭାଷାର ପ୍ରସାର ପ୍ରଚାର ପାଇଁ ଏକ କୋଡ଼ିଏ ଦଫା କାର୍ଯ୍ୟକ୍ରମ ଘୋଷଣା କରିଦେଲେ। ଏଥିରେ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସରକାରୀ ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନ ବ୍ୟବସ୍ଥା, ଓଡ଼ିଆ ମାଧ୍ୟମ ସ୍କୁଲମାନଙ୍କରେ ଓଡ଼ିଆ ପଢ଼ାଇବା ପାଇଁ ଓଡ଼ିଆ ଶିକ୍ଷକ ନିଯୁକ୍ତି, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଖାଲିପଡ଼ିଥିବା ଅଧ୍ୟାପକ ପଦବୀ ପୂରଣ ଓ  ସରକାରଙ୍କ ସମସ୍ତ ପ୍ରଶାସନିକ ପରୀକ୍ଷା ଓଡ଼ିଆରେ କରିଲା ଭଳି ସମ୍ମିଳନୀର ଦାବୀଗୁଡ଼ିକ କଥା ନଥିଲା। ତେଣୁ ସରକାରଙ୍କର ପ୍ରଚାର ସର୍ବସ୍ୱ ଘୋଷଣାକୁ 'ଭାଷା ସୁରକ୍ଷା ସମ୍ମିଳନୀ' ତଥା ଅନ୍ୟ ଭାଷା ଆନ୍ଦୋଳନକାରୀମାନେ ବିରୋଧ କରିଥିଲେ। ଶେଷକୁ ସରକାର ଆନ୍ଦୋଳନର ଚାପରେ ପଡ଼ି ଲୋକମତକୁ ବିଭ୍ରାନ୍ତ କରିବା ପାଇଁ ହଠାତ୍ ପୁଣି ଘୋଷଣା କରିଦେଲେ ବ୍ୟବସାୟ ବାଣିଜ୍ୟ ପ୍ରତିଷ୍ଠାନମାନଙ୍କର ନାମଫଳକ ଓଡ଼ିଆରେ ଲେଖାଇବେ ଏବଂ ଯେଉଁମାନେ ନ କରିବେ ସେମାନଙ୍କ ବିରୋଧରେ ଦଣ୍ଡବିଧାନ କରାଯିବ। ଏଥି ସହିତ ଯେଉଁ ସରକାରୀ ଅଧିକାରୀ ବା ବିଭାଗ ଓଡ଼ିଆରେ ସରକାରୀ କାର୍ଯ୍ୟ ନ କରିବେ ସେମାନଙ୍କ ବିରୋଧରେ ମଧ୍ୟ ଦଣ୍ଡବିଧାନ ହେବ। କିନ୍ତୁ ସେ ଦଣ୍ଡବିଧାନ ରୂପ କ'ଣ ହେବ ଘୋଷଣା କରାଗଲା ନାହିଁ। ସରକାରଙ୍କର ଏହି ବିଭ୍ରାନ୍ତିକର ଘୋଷଣାର ପ୍ରକୃତ ଉଦ୍ଦେଶ୍ୟକୁ ନ ବୁଝି ଅନେକ ଭାବିଲେ ଏଥର ଭାଷା ଆଇନ କାର୍ଯ୍ୟକାରି ହୋଇଯିବ। କିନ୍ତୁ ସେମାନେ ବୁଝିଲେ ନାହିଁ ବ୍ୟବସାୟ ବାଣିଜ୍ୟ ଅନୁଷ୍ଠାନର ନାମ ଫଳକ ଓଡ଼ିଆରେ ଲେଖିଦେଲେ ସରକାରୀ ଦପ୍ତର ଓ କୋର୍ଟ

କଚେରୀ କାର୍ଯ୍ୟ ଓଡ଼ିଆ ଭାଷାରେ ବଳେବଳେ ହୋଇଯିବ ନାହିଁ। ଏବେ ଅବଶ୍ୟ ସେମାନଙ୍କ ମୋହ ଭଙ୍ଗ ହୋଇଛି ଏବଂ ସରକାରଙ୍କର ସମସ୍ତ ଘୋଷଣା ଯେ ଏକ ଧୂଆଁବାଣ ଥିଲା ବୋଲି କହୁଛନ୍ତି।

ଇତିମଧ୍ୟରେ ସରକାରଙ୍କ ତରଫରୁ ଭାଷା ଆଇନକୁ କାର୍ଯ୍ୟକାରୀ ନ କରିବା ପାଇଁ ସମସ୍ତ ଛଳନାପୂର୍ଣ୍ଣ କାର୍ଯ୍ୟ ଧରାପଡ଼ିଗଲାଣି। ଲୋକେ ବୁଝିଗଲେଣି ରାଜ୍ୟରେ ଓଡ଼ିଆ ବିରୋଧୀ ଉଚ୍ଚ ଅଧିକାରୀଙ୍କ ଷଡଯନ୍ତ୍ର ଓ ମୁଖ୍ୟମନ୍ତ୍ରୀଙ୍କ ଓଡ଼ିଆ ନ ଜାଣିବାଟା ଭାଷା ଆଇନକୁ କାର୍ଯ୍ୟ କରିବା ପଥରେ ମୁଖ୍ୟ ବାଧକ। ଗତ ୧୮ ବର୍ଷ ମଧ୍ୟରେ ମୁଖ୍ୟମନ୍ତ୍ରୀ ଓଡ଼ିଆ ଶିଖିଥିଲେ ଏବଂ ରାଜ୍ୟର ପ୍ରଭାବଶାଳୀ ଅଫିସରମାନେ ଓଡ଼ିଆରେ ଲେଖିବା ପଢ଼ିବା ଅଭ୍ୟାସ ରଖିଥିଲେ ଆଜି ଓଡ଼ିଆରେ ସମସ୍ତ ଫାଇଲପତ୍ର କାର୍ଯ୍ୟ କରିବାକୁ ଅସୁବିଧା ଉପୁଜୁ ନଥାନ୍ତା। ଏମନ୍ତ ଅବସ୍ଥାରେ ରାଜ୍ୟର ମୁଖ୍ୟ ବିରୋଧୀ ଦଳମାନେ ମୁଖ୍ୟମନ୍ତ୍ରୀଙ୍କ ମୁଣ୍ଡରେ ସମସ୍ତ ଦୋଷ ଢାଳିଦେଇ ସେମାନେ କ୍ଷମତାକୁ ଆସିଲେ ଭାଷା ଆଇନକୁ କାର୍ଯ୍ୟକାରୀ କରିବେ ବୋଲି ଘୋଷଣା କଲେଣି। ବିଭିନ୍ନ ଅଞ୍ଚଳରେ 'ଭାଷା ସୁରକ୍ଷା ଆନ୍ଦୋଳନ'ର ଲକ୍ଷଲକ୍ଷ କର୍ମୀ ଏବଂ ଭାଷାପ୍ରେମୀ ଓଡ଼ିଆମାନେ ସ୍ଲୋଗାନ ଦେଲେଣି, "ଭାଷା ନାହିଁ ତ ଭୋଟ ନାହିଁ"। ଭାଷା ଆଇନକୁ କାର୍ଯ୍ୟକାରୀ କରିବାରେ ବିଫଳ ସରକାର ଏବେ ଇତିହାସର କାଠଗଡ଼ାରେ ଛିଡ଼ା ହୋଇଛନ୍ତି। ମୁଖ୍ୟମନ୍ତ୍ରୀଙ୍କୁ ନିଷ୍ପତ୍ତି ନେବାକୁ ହେବ ଓଡ଼ିଆମାନଙ୍କ ଜାତୀୟ ଗଣତାନ୍ତ୍ରିକ ଅଧିକାର-ଓଡ଼ିଆରେ ଶାସନ ଓ ନ୍ୟାୟ ପ୍ରଦାନ କରିବା ପାଇଁ ଓଡ଼ିଆ ଜାତିର ସ୍ୱାଭିମାନ ଓ ପରିଚୟ ସହିତ ଜଡ଼ିତ ଭାଷା ଆଇନକୁ ତୁରନ୍ତ କାର୍ଯ୍ୟକାରୀ କରିବେ କି ନାହିଁ। ଅନ୍ୟ ଦିଗରେ ୪ କୋଟି ଓଡ଼ିଆଙ୍କୁ ସ୍ଥିର କରିବାକୁ ହେବ ନିଜ ମାତୃଭାଷାକୁ ଶାସନର ଭାଷା କରି ରାଜରାଣୀର ସମ୍ମାନ ଦେବେ ନାଁ ସରକାରଙ୍କର ପ୍ରଚାର ଭେଳିକିରେ ଭୁଲି ଇଂରେଜୀକୁ ଚିରଦିନ ପାଇଁ ଶାସନର ଭାଷା ରୂପେ ମୁଣ୍ଡପାତି ଗ୍ରହଣ କରିନେବେ। ଊନବିଂଶ ଶତାବ୍ଦୀର ୭୦/୮୦ ଦଶକର ଭାଷା ସୁରକ୍ଷା ଆନ୍ଦୋଳନ ପରେ ଆଜି ଓଡ଼ିଆ ଜାତି ଆଗରେ ଏହାହିଁ ହେଉଛି ସବୁଠାରୁ ବଡ଼ ପ୍ରଶ୍ନ। ଏହି ପ୍ରଶ୍ନର ସମାଧାନ ଉପରେ ଭାଷା ସୁରକ୍ଷା ଆନ୍ଦୋଳନର ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଭର କରୁଛି।



# ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଗଣ ତଦାରଖି ଅଭିଯାନ

ଓଡିଆ ଭାଷାର ସୁରକ୍ଷା ଓ ଓଡ଼ିଆରେ ଓଡ଼ିଶାର ଶାସନ ଦାବୀକରି ଗତ ଚାରିବର୍ଷ ଧରି ଚାଲିଥିବା ଭାଷା ଆନ୍ଦୋଳନ ଚାପରେ ରାଜ୍ୟ ସରକାର ୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଏହି ଆଇନର ସଂଶୋଧନ କରି ନିୟମାବଳୀ ପ୍ରଣୟନ କରିଛନ୍ତି। ଏହି ନିୟମାବଳୀ ଅନୁଯାୟୀ ଗତ ଅଗଷ୍ଟ ୧୬ରୁ ରାଜ୍ୟ ପ୍ରଶାସନ, ନିମ୍ନ ଅଦାଲତ ଓ ବିଧାନସଭାର କାର୍ଯ୍ୟ ଓଡ଼ିଆ ଭାଷାରେ କରିବେ ବୋଲି ଘୋଷଣା କରିଛନ୍ତି। ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସରକାରଙ୍କର ଜଣେ ଯୁଗ୍ମ ସଚିବଙ୍କ ଅଧକ୍ଷତାରେ ଏକ ଭାଷା ବିଭାଗ ବା ଡିଭିଜନ ଗଠନ ହୋଇଛି। ଏହି ବିଭାଗର କାର୍ଯ୍ୟକୁ ପ୍ରତି ଛ'ମାସରେ ଥରେ ଲେଖାଁ ସମୀକ୍ଷା କରିବା ପାଇଁ ମୁଖ୍ୟଶାସନ ସଚିବଙ୍କ ଅଧକ୍ଷତାରେ ଏକ କମିଟି ଗଠିତ ହୋଇଛି। ଏହା ଭାଷା ଆନ୍ଦୋଳନ ତଥା ପ୍ରତ୍ୟେକ ଭାଷାପ୍ରେମୀ ଓଡିଆମାନଙ୍କ ପାଇଁ ଏକ ଗୌରବର କଥା। ସରକାରଙ୍କ ଘୋଷଣା ଶୁଣି ଓଡ଼ିଶାର ଅନେକ ଲୋକ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ

ଉଠିଥିଲେ। ବିଶେଷ କରି ସେଇସବୁ ଲୋକ ଉଲ୍ଲସିତ ହୋଇଥିଲେ ଯେଉଁମାନେ ଗତ ଚାରିବର୍ଷ ଧରି ଶହଶହ ସଭା ସମିତି କରିଛନ୍ତି, ମୁଖ୍ୟମନ୍ତ୍ରୀଙ୍କୁ ଲକ୍ଷାଧିକ ଚିଠି ଲେଖିଛନ୍ତି, ଜିଲାପାଳଙ୍କ ଅଫିସ ଆଗରେ ଧାରଣା ଦେଇଛନ୍ତି, ଅନଶନରେ ବସିଛନ୍ତି, ରାଜ୍ୟସାରା ମଶାଲ ଶୋଭାଯାତ୍ରା କରି ସରକାରଙ୍କ ଉପରେ ଚାପ ସୃଷ୍ଟି କରିଛନ୍ତି। ସେମାନେ ଭାବିଥିଲେ ଦୀର୍ଘ ୬୨ ବର୍ଷ ପରେ ଓଡ଼ିଶାରେ ଏଥର ଓଡ଼ିଆରେ ଶାସନ ଚାଲିବ। କିନ୍ତୁ ଲୋକଙ୍କ ଚାପରେ ପଡ଼ି ସରକାର ଯାହା କରିଛନ୍ତି ତାହା ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ନା ଏହାକୁ ବିଫଳ କରିଦେବା ପାଇଁ, ସେ ନେଇ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଗଭୀର ସନ୍ଦେହ ସୃଷ୍ଟି ହୋଇଛି।

କାରଣ ସରକାର ଯେଉଁ ନିୟମାବଳୀ ପ୍ରଣୟନ କରିଛନ୍ତି ତାହା ଅତ୍ୟନ୍ତ ଅଧାପନ୍ତରିଆ ଓ ତ୍ରୁଟିପୂର୍ଣ୍ଣ। ତାହା ନ ହୋଇଥିଲେ ଯେଉଁ ଓଡ଼ିଆ ବିରୋଧୀ ଅମଲାତନ୍ତ୍ର ଆଇନକୁ କାର୍ଯ୍ୟକାରି କରିବ ପୁଣି ତାରି ହାତରେ ସେହି କାର୍ଯ୍ୟର ତଦାରଖି କରିବାର ଦାୟିତ୍ୱ ସରକାର କିପରି ସମର୍ପି ଦେଇଥାନ୍ତେ। ଏଥି ସହିତ ନିୟମାବଳୀରେ ରଖାଗଲା ଯେଉଁମାନେ ସରକାରଙ୍କୁ ଓଡ଼ିଆରେ ଚିଠିପତ୍ର ଲେଖିବେ ସେମାନଙ୍କୁ ସରକାର ଓଡ଼ିଆରେ ଉତ୍ତର ଦେବେ ଏବଂ ଇଂରେଜୀରେ ଲେଖିଲେ ଇଂରେଜୀରେ ଉତ୍ତର ମିଳିବ। ଜାନକୀବାବୁଙ୍କ ପରେ ବିଜୁବାବୁ ୧୯୯୦ରେ କ୍ଷମତାକୁ ଆସିଲା ପରେ ଘୋଷଣା କରିଦେଲେ, ଯିଏ ଓଡ଼ିଆରେ ପାରିବ ଓଡ଼ିଆରେ ଲେଖ ଏବଂ ଯିଏ ଇଂରାଜୀରେ ଚାହୁଁଛି ଇଂରାଜୀରେ ଲେଖୁ। ଗୋଳିପାଣି କଙ୍କଡ଼ାକୁ ସୁହାଇଲା ଭଳି ସମସ୍ତ ସରକାରୀ ଅଫିସର ଇଂରାଜୀରେ ଲେଖିଲେ। ଓଡ଼ିଆ ଭାଷା ବେଇଜତ୍ ହୋଇ ମୁଣ୍ଡରେ ଓଢ଼ଣି ଢାଙ୍କି ଚୁପ୍‌ଚାପ ରହିଗଲା।

ଆମ ସରକାର ଓ ଅମଲତନ୍ତ୍ରର ଓଡ଼ିଆ ଭାଷାପ୍ରେମ ଓ ଆନ୍ତରିକତା ସଂପର୍କରେ ଓଡ଼ିଶାର ଲୋକେ ଭଲଭାବେ ଜାଣନ୍ତି। ଗତ ୬୨ ବର୍ଷଧରି ଅଫିସରମାନେ ଓଡ଼ିଆରେ ଲେଖାପଢ଼ା କରିବାକୁ ଭୁଲିଗଲେଣି। ଅଣଓଡ଼ିଆ ଅଫିସରମାନଙ୍କର ଓଡ଼ିଆରେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଓଡ଼ିଆ ଜ୍ଞାନ ପୂର୍ବର ୩ୟ ଶ୍ରେଣୀର ଜ୍ଞାନ ସହିତ ସମାନ ହେବନାହିଁ। ଅନେକ ଇଂରେଜୀ ମାଧ୍ୟମ ସ୍କୁଲରେ ପଢ଼ିଛନ୍ତି। ସରକାର ନଥିପତ୍ର କାମ କରିବା ପାଇଁ ସେମାନଙ୍କୁ ଆହୁରି ଅନେକ ଶିଖିବାକୁ ହେବ ଓ ଅଭ୍ୟାସ କରିବାକୁ ପଡ଼ିବ। ଏତେ କଷ୍ଟ କରିବା ଅପେକ୍ଷା ଆଇନରେ ଫାଙ୍କ ରଖିଦେଇ ସେଇବାଟେ ପଳେଇଯିବାଟା ସେମାନଙ୍କ ପାଇଁ ସହଜ ହେବ। ସେଥିପାଇଁ ଭାଷା ସୁରକ୍ଷା ସମ୍ମିଳନୀ ଦାବୀ କରି ଆସିଛି ଆଇନରେ ଏପରି ବ୍ୟବସ୍ଥା ରହୁ ଯଦ୍ୱାରା ଆମ ଭାଷା ଆଇନ ଗତ ୬୨ ବର୍ଷ ଧରି ଯେପରି ଅଣଦେଖା

ଅବସ୍ଥାରେ ପଡି ରହିଥିଲା ସେପରି ନ ହେଉ। ସରକାର ଭାଷା ଆଇନକୁ ସୁଷ୍ଠୁ ରୂପେ କାର୍ଯ୍ୟକାରୀ କରିବା ନିମିତ୍ତ ଏଥିରେ ଏକ ନିରପେକ୍ଷ କ୍ଷମତାସଂପନ୍ନ ଭାଷା ଆୟୋଗ ଗଠନ ନିମିତ୍ତ ବ୍ୟବସ୍ଥା କରନ୍ତୁ। ଏଥିସହିତ ଯେଉଁ ଅମଲା ବା ଅଫିସରମାନେ ଭାଷା ଆଇନକୁ କାର୍ଯ୍ୟକାରୀ କରିବାରେ ଖିଲାପ କରିବେ ସେମାନଙ୍କ ପ୍ରତି ଦଣ୍ଡବିଧାନର ବ୍ୟବସ୍ଥା ମଧ୍ୟ ରହୁ। ଭାଷା ଆୟୋଗ ଅମଲାତନ୍ତ୍ରଠାରୁ ସଂପୂର୍ଣ୍ଣ ଅଲଗା ରହିବ ଏବଂ ଓଡ଼ିଆ ଭାଷାକୁ ଶ୍ରଦ୍ଧା କରୁଥିବା ବିଶିଷ୍ଟ ବିଚାରପତି, ବରିଷ୍ଠ ସାମ୍ବାଦିକ, ଭାଷାବିତ୍ ଓ ପୂର୍ବତନ ପ୍ରଶାସକଙ୍କୁ ନେଇ ଗଠିତ ହେବ। କେନ୍ଦ୍ର ସରକାରଙ୍କର ରାଷ୍ଟ୍ରଭାଷା ଆୟୋଗ, ଆନ୍ଧ୍ରପ୍ରଦେଶର ଭାଷା ଆୟୋଗ ବା କର୍ଣ୍ଣାଟକର କନ୍ନଡ଼ ଭାଷା ବିକାଶ ଆୟୋଗ ଭଳି ଏକ କ୍ଷମତାସଂପନ୍ନ ଅର୍ଦ୍ଧ-ନ୍ୟାୟିକ ଅନୁଷ୍ଠାନ ବା ଷ୍ଟାଚ୍ୟୁଟରୀ ବଡି ଭଳି କାର୍ଯ୍ୟକରିବ। ଏହାର କାର୍ଯ୍ୟହେବ ଅମଲାତନ୍ତ୍ର ସରକାରୀ ଭାଷା ଆଇନକୁ କିପରି କାର୍ଯ୍ୟକାରୀ କରୁଛି ତାକୁ ତଦାରଖ ବା ମନିଟରିଂ କରିବ। ଆବଶ୍ୟକ ଅନୁସାରେ ଏହିସବୁ କ୍ଷେତ୍ରରେ ଇଂରେଜୀ ବଦଳରେ ଓଡ଼ିଆ ଭାଷାର ପ୍ରୟୋଗକୁ ତ୍ୱରାନ୍ୱିତ କରିବା ପାଇଁ ସରକାରଙ୍କୁ ଆବଶ୍ୟକ ପଦକ୍ଷେପ ନେବାକୁ ସୁପାରିଶ କରିବ। ଅନିଚ୍ଛୁକ ଅଫିସରମାନେ ଯେଉଁଠି ଆଇନକୁ କାର୍ଯ୍ୟକାରୀ ନ କରୁଛନ୍ତି ସେମାନଙ୍କ ସଂପର୍କରେ ସରକାରଙ୍କୁ ଅବହିତ କରିବ ଓ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ମଧ୍ୟ ପରାମର୍ଶ ଦେବ। କେନ୍ଦ୍ର ଏବଂ ଅନ୍ୟ ରାଜ୍ୟ ସରକାରଙ୍କର ଭାଷା ଆୟୋଗଗୁଡ଼ିକ ପରି ଏହାର ରିପୋର୍ଟ ରାଜ୍ୟ ସରକାର ବିଧାନସଭାରେ ଉପସ୍ଥାପନ କରିବେ। ଏହି ରିପୋର୍ଟ ଉପରେ ବିଧାୟକମାନେ ଆଲୋଚନା ମଧ୍ୟ କରିପାରିବେ। ଭାଷା ଆୟୋଗ ଓ ଦଣ୍ଡବିଧାନ ବ୍ୟବସ୍ଥା ନ ରହିଲେ ଅମଲାତନ୍ତ୍ର ଆଇନକୁ ଖାତିର କରିବ ନାହିଁ। ଓଡ଼ିଶାରେ ଓଡ଼ିଆ ଭାଷା ପ୍ରତି ବହୁ ରାଜନୈତିକ ନେତାଙ୍କର ହେୟ ମନୋଭାବ ଓ ଅମଲାତନ୍ତ୍ରର ଲୁକ୍କାୟିତ ଷଡଯନ୍ତ୍ରର ଶିକାର ହେବ ଭାଷା ଆଇନ ଓ ଓଡ଼ିଆ ଭାଷା। ତେଣୁକରି ସରକାର ଏତେ ବର୍ଷପରେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁ ପଦକ୍ଷେପ ନେଲେ ତାକୁ ଓଡ଼ିଆ ଲୋକେ ସ୍ୱାଗତ ନ କରି ଏହାର କାର୍ଯ୍ୟକାରିତାକୁ ନେଇ ଗଭୀର ଆଶଙ୍କା ପ୍ରକାଶ କରିଛନ୍ତି।

ଆମକୁ ମନେ ରଖିବାକୁ ହେବ ଏକ ଅଧାପନ୍ତରିଆ ତ୍ରୁଟିପୂର୍ଣ୍ଣ ଆଇନ ଓ ଆଇନରେ ଫାଙ୍କ ଦ୍ୱାରା ଅଭିଷ୍ଟ ଫଳ ମିଳେ ନାହିଁ। ଯେଉଁମାନଙ୍କର ଏପରି ଏକ ଆଇନକୁ କାର୍ଯ୍ୟକାରୀ ନ କରିବାକୁ ମନ୍ଦ ଉଦ୍ଦେଶ୍ୟ ଥାଏ ସେମାନେ ଏହି ଦରପନ୍ତରିଆ ଆଇନ ବା ଆଇନରେ ଫାଙ୍କ ଦ୍ୱାରା ଆଇନକୁ ଧୀରେଧୀରେ ଅକାମୀ

କରି ଦିଅନ୍ତି । ଠିକ୍ ଏହିପରି ଘଟିଥିଲା ୧୯୫୪ ସରକାରୀ ଭାଷା ଆଇନ କ୍ଷେତ୍ରରେ । ନବକୃଷ୍ଣ ଚୌଧୁରୀ ଓଡ଼ିଶା ବିଧାନସଭାରେ ଆଇନଟିକୁ ପାଶ୍ କରିଦେଲେ । କିନ୍ତୁ ଏଥିରେ ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକୀୟ ନିୟମାବଳୀ ପ୍ରଣୟନ କରିବା ନିମିତ୍ତ ସରକାରଙ୍କ ପ୍ରତି ନିର୍ଦ୍ଦେଶ ନଥିଲା । ଏହି ତ୍ରୁଟିଟିର ସୁଯୋଗ ନେଇ ଓଡ଼ିଶାର କେତେକ ମୁଖ୍ୟମନ୍ତ୍ରୀ ଓ ଅମଲାମାନେ ଭାଷା ଆଇନଟିକୁ କାର୍ଯ୍ୟକାରୀ କଲେ ନାହିଁ । ନବକୃଷ୍ଣ ଚୌଧୁରୀ ବା ଜାନକୀବାବୁ ଯଦି ଆଇନର ନିୟମାବଳୀ ପ୍ରଣୟନ ଓ ଭାଷା ଆୟୋଗ ଗଠନ କଥାଟିକୁ ଆଇନର ଅନ୍ତର୍ଭୁକ୍ତ କରିଦେଇଥାନ୍ତେ ତେବେ ସେମାନଙ୍କ ପରେ ଏବେ ବି ଓଡ଼ିଆରେ ଓଡ଼ିଶାର ଶାସନ ଚାଲୁଥାନ୍ତା । ସରକାରଙ୍କ ପାଇଁ ଅତୀତର ଏହି ଅଭିଜ୍ଞତାରୁ ଶିକ୍ଷାଲାଭ କରି ଭାଷା ଆୟୋଗ ଗଠନକୁ ଆଇନରେ ଓ ଦଣ୍ଡବିଧାନ ବ୍ୟବସ୍ଥାକୁ ନିୟମାବଳୀରେ ଅନ୍ତର୍ଭୁକ୍ତ କରିବା ଏକ ବୁଦ୍ଧିମତାର କାର୍ଯ୍ୟ ହେବ । ଏଇ ଦୁଇଟି ବ୍ୟବସ୍ଥା ଭାଷା ଆଇନକୁ କାର୍ଯ୍ୟକାରୀ କରିବା ଦିଗରେ ଗ୍ୟାରେଣ୍ଟି ଭଳି କାର୍ଯ୍ୟ କରିବ । ତେଣୁକରି ଭାଷା ସୁରକ୍ଷା ସମ୍ମିଳନୀ ୨୦୧୩ ମସିହାରୁ ତା'ର ୧୧ ଦଫା ଦାବୀ ମଧ୍ୟରେ ଭାଷା ଆୟୋଗ ଗଠନ ଓ ଦଣ୍ଡବିଧାନ ବ୍ୟବସ୍ଥାକୁ ଏକ ନମ୍ବର ଦାବୀ ରୂପେ ଉପସ୍ଥାପନ କରି ଆସିଛି । ଏବେ କେତେକ ଭାଷାପ୍ରେମୀ ବ୍ୟକ୍ତି ଭାଷା ଆୟୋଗ ଗଠନ ପାଇଁ ଦାବୀ ନ କରି କେବଳ ଦଣ୍ଡବିଧାନ କଥା କହୁଛନ୍ତି । ଦଣ୍ଡବିଧାନ ପାଇଁ କିଏ ସୁପାରିଶ କରିବ ଓ ଦଣ୍ଡବିଧାନ କିଏ କରିବ ? ଅଫିସରମାନେ କ'ଣ ଅଫିସରଙ୍କ ବିରୋଧରେ ଅଭିଯୋଗ ଆଣିବେ ଓ ଦଣ୍ଡବିଧାନ କରିବେ ?

ଆମ ରାଜ୍ୟର ରାଜନୀତି ଓ ସଂସ୍କୃତି ଉପରେ ବୁଦ୍ଧିଜୀବୀମାନଙ୍କର ଯେତେ ପ୍ରଭାବ ନାହିଁ ଅମଲାତନ୍ତ୍ରର ପ୍ରଭାବ ଅନେକ ଅଧିକ । ଯେଉଁଠି ରାଜନୈତିକ ନେତୃତ୍ୱ ଦୁର୍ବଳ ଓ ଦୂରଦୃଷ୍ଟିହୀନ ସେଠି ଅମଲାତନ୍ତ୍ରର ପ୍ରଭାବ ବେଶି । ଯେଉଁ ଦେଶର ରାଜନୈତିକ ନେତୃତ୍ୱ ଅମଲାତନ୍ତ୍ର ଉପରେ ଶାସନର ଦାୟିତ୍ୱ ଛାଡ଼ିଦିଏ ସେ ଦେଶର ବିକାଶ ବାଟବଣା ହେବାକୁ ବାଧ୍ୟ । କାରଣ ଅମଲାତନ୍ତ୍ରର ଚରିତ୍ର ହେଲା ଦୁର୍ନୀତିକୁ ନୀତିରେ ପରିଣତ କରିବା ଏବଂ ଲୋକଙ୍କ ସ୍ୱାର୍ଥରେ ମୌଳିକ ପରିବର୍ତ୍ତନକୁ ବିରୋଧ କରିବା । ତେଣୁ ଗୋଟିଏ ଜାତିର ପ୍ରିୟ ମାତୃଭାଷାର ଦାୟିତ୍ୱ ଅମଲାତନ୍ତ୍ର ଉପରେ ଛାଡ଼ିଦେଲେ ସେ ଭାଷା କେବେ ଉଧେଇବ ନାହିଁ । ତା' ନ ହୋଇଥିଲେ ଆମର ଭାଷା, ବିଶ୍ୱବିଦ୍ୟାଳୟ, ମହାବିଦ୍ୟାଳୟ, ବିଦ୍ୟାଳୟ ଓ ଭାଷା ପ୍ରତିଷ୍ଠାନର ଅବସ୍ଥା ଏପରି ଦୟନୀୟ ହୋଇ ନଥାନ୍ତା । ତେଣୁ ଓଡିଆ ଜାତିର ସ୍ୱାଭିମାନ ତଥା ଓଡିଆ ଭାଷାର ଭବିଷ୍ୟତ ସହିତ ସଂପୃକ୍ତ ଏହି ଆଇନକୁ ସରକାର ବିଭିନ୍ନ ସ୍ତରରେ

କିପରି କାର୍ଯ୍ୟକାରୀ କରୁଛନ୍ତି ତାକୁ ଜନସାଧାରଣ ତଦାରଖ କରିବା ଏକାନ୍ତ ଜରୁରୀ ହୋଇପଡିଛି ।

ଗତ ଅଗଷ୍ଟ ୨୩ ତାରିଖରେ ଅନୁଷ୍ଠିତ ଭାଷା ସୁରକ୍ଷା ସମ୍ମିଳନୀର ବିଶେଷ ଅଧିବେଶନର ନିଷ୍ପତି ଅନୁଯାୟୀ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସମ୍ମିଳନୀ ତା'ର ରାଜ୍ୟବ୍ୟାପୀ ଜନସଚେତନତା ଆନ୍ଦୋଳନ ସହିତ ଗଣ ତଦାରଖି ଅଭିଯାନ ଆରମ୍ଭ କରିଛି । ଏହି ଅଭିଯାନର ଲକ୍ଷ୍ୟ ହେଉଛି ସଚିବାଳୟ ଠାରୁ ଆରମ୍ଭ କରି ବିଭିନ୍ନ ଜିଲ୍ଲା ଓ ବ୍ଲକସ୍ତରୀୟ ସରକାରୀ କାର୍ଯ୍ୟାଳୟ, କୋର୍ଟ କଚେରୀ ଓ ପୌରପାଳିକା ଆଦିରେ ଇଂରେଜୀ ପରିବର୍ତ୍ତେ ଓଡିଆରେ କାର୍ଯ୍ୟ ହେଉଛି କି ନାହିଁ ଏବଂ ସରକାରୀ ତଥା ବାଣିଜ୍ୟିକ ପ୍ରତିଷ୍ଠାନମାନଙ୍କର ନାମଫଳକ ଗୁଡିକ ଓଡିଆରେ ଲେଖାଯାଉଛି କି ନାହଁ ତା'ର ତଦାରଖ କରିବା । ଏଥିସହିତ ଶିକ୍ଷା କ୍ଷେତ୍ରରେ ଓଡିଆକୁ ପ୍ରାଧାନ୍ୟ ଦିଆଯାଉଛି କି ନାହିଁ ତଦାରଖ କରାଯିବ ଓ ଭାଷା ଆଇନକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ସରକାରୀ କଳର ଶିଥିଳତା ଓ ବିମୁଖତା ଯଦି ଦେଖାଯାଉଥାଏ ତେବେ ସେ ସଂପର୍କରେ ଜନସାଧାରଣଙ୍କୁ ଅବହିତ କରାଯିବ ଏବଂ ଆବଶ୍ୟକ ହେଲେ ଆନ୍ଦୋଳନ ହେବ । ଉଭୟ ଜନସାଧାରଣଙ୍କର ଚାପ ଓ ସରକାରଙ୍କର ଆନ୍ତରିକତା ଉପରେ ଭାଷା ଆଇନର ସଫଳ କାର୍ଯ୍ୟାୟନ ନିର୍ଭର କରୁଛି । ଓଡିଆମାନେ ନିଜ ମାତୃଭାଷାରେ ଶାସନ ପାଇଁ ସ୍ୱର ଉତ୍ତୋଳନ ନ କଲେ ଭାଷା ଆଇନ କାର୍ଯ୍ୟକାରୀ ନ ହୋଇ ପୁଣି ପୂର୍ବପରି ସରକାରଙ୍କର ଶୀତଳ ଭଣ୍ଡାରରେ ପଡିରହିବ । ଏହି ଆଇନ କାର୍ଯ୍ୟକାରୀ ନ ହେଲେ ଓଡିଆ ଭାଷା ଓଡିଆ ପିଲାମାନଙ୍କର ଜୀବନ ଜୀବିକାର ଭାଷା ହୋଇ ପାରିବ ନାହିଁ ।

ଭାଷା ଆଇନକୁ କାର୍ଯ୍ୟକାରୀ କରାଇବା ପାଇଁ ଆନ୍ଦୋଳନ କରିବା ସହିତ ଓଡିଆମାନେ ଯେପରି ନିଜ ମାତୃଭାଷାକୁ ଆଦର କରିବେ ଏବଂ ନିଜର ପାରିବାରିକ ତଥା ସାମାଜିକ ଜୀବନରେ ଏହାକୁ ବ୍ୟବହାର କରିବେ ସେଥିପାଇଁ ଭାଷା ସୁରକ୍ଷା ସମ୍ମିଳନୀ ପ୍ରାରମ୍ଭରୁ ଜନଚେତନା ସୃଷ୍ଟି କରିଆସିଛି । ସୁଖର କଥା ଏ କ୍ଷେତ୍ରରେ ସମ୍ମିଳନୀ କିଛି ପରିମାଣରେ ସଫଳତା ଅର୍ଜନ କରିଛି । କେବଳ ସରକାରଙ୍କ ଉପରେ ନିର୍ଭର କରି କୌଣସି ଭାଷା ସଂସ୍କୃତି ବଂଚିପାରେ ନାହିଁ । ଏସବୁର ସୁରକ୍ଷା ଓ ବିକାଶ ପାଇଁ ଜନସାଧାରଣଙ୍କର ସଂପୃକ୍ତି ଓ ଦାୟିତ୍ୱବୋଧ ଏକାନ୍ତ ଜରୁରୀ । ଏଥିପାଇଁ ଓଡିଆମାନଙ୍କ ମଧ୍ୟରେ ହଜି ଯାଉଥିବା ଜାତୀୟତାବୋଧ ଓ ଭାଷା ପ୍ରୀତିକୁ ପୁଣି ଜାଗ୍ରତ କରିବାକୁ ହେବ । ଭାଷା ସୁରକ୍ଷା ସମ୍ମିଳନୀ ଏହି ଜାତୀୟ ଜାଗରଣ ପାଇଁ ରାଜ୍ୟର ପ୍ରତ୍ୟେକ ଜିଲ୍ଲା ଓ ବ୍ଲକ ସ୍ତରରେ ଭାଷା ସମ୍ମିଳନୀମାନ ଆୟୋଜନ

କରିବା ସହିତ ବିଭିନ୍ନ ଶିକ୍ଷା, ସାଂସ୍କୃତିକ ଅନୁଷ୍ଠାନ ଓ ଓକିଲ ସଂଘମାନଙ୍କ ସହାୟତାରେ ସଭା ଓ ଆଲୋଚନାଚକ୍ରମାନ ଆୟୋଜନ କରିବ। ଦୀର୍ଘ ୬୨ ବର୍ଷ ପରେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ଏବେ ସମଗ୍ର ଓଡିଆ ଜାତି ପାଇଁ ଏକ ବିରାଟ ଚାଲେଞ୍ଜ ବା ଆହ୍ୱାନ ସୃଷ୍ଟି କରିଛି। ବର୍ତମାନର ଓଡିଆମାନେ ଏହି ଜାତୀୟ କର୍ତବ୍ୟଟି ପାଳନ ନ କରି ପାରିଲେ ଓଡିଆ ଜାତିକୁ ଅନେକ ମୂଲ୍ୟ ଦେବାକୁ ପଡିବ ଏବଂ ଆମ ଭବିଷ୍ୟତ ବଂଶଧରମାନେ ଆମକୁ କେବେ କ୍ଷମା ଦେବେ ନାହିଁ।



# ସରକାରୀ ଘୋଷଣା ଓ ସରକାରୀ ଭାଷା ଆୟୋଗ

୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ସହିତ ଓଡ଼ିଆମାନଙ୍କ ମଧ୍ୟରେ ହଜି ଯାଇଥିବା ଜାତୀୟତାବୋଧକୁ ପୁନଃ ଜାଗ୍ରତ କରିବା ପାଇଁ ଗତ ପାଞ୍ଚବର୍ଷ ଧରି ରାଜ୍ୟରେ ଏକ ଭାଷା ଆନ୍ଦୋଳନ ଚାଲିଛି। ଏହି ଆନ୍ଦୋଳନର ଫଳସ୍ୱରୂପ ଓଡ଼ିଆମାନଙ୍କ ମଧ୍ୟରେ କିଛି ପରିମାଣରେ ଜାତୀୟ ଜାଗରଣ ଏବଂ ଭାଷା ସଚେତନତା ସୃଷ୍ଟି ହୋଇଛି। ଅନେକ ବୁଦ୍ଧିଜୀବୀ, ରାଜନେତା, ୧୯୫୪ ଭାଷା ଆଇନକୁ ତୁରନ୍ତ କାର୍ଯ୍ୟକାରୀ କରିବାକୁ ଦାବୀ କରୁଛନ୍ତି। ଭାଷା ଆଇନ କାର୍ଯ୍ୟକାରୀ ନହେଲେ ଓଡ଼ିଆ ଭାଷା ବିପନ୍ନ ହୋଇଯିବ ବୋଲି ମତ ଦେଉଛନ୍ତି। ରାଜ୍ୟବ୍ୟାପୀ ଭାଷା ଆନ୍ଦୋଳନ ଏବଂ ଜନସାଧାରଣଙ୍କ ଚାପରେ ରାଜ୍ୟ ସରକାର ୨୦୧୫ ମସିହାରୁ ବିଧାନସଭାର କାର୍ଯ୍ୟ ଓଡ଼ିଆ ଭାଷାରେ କରିବାକୁ ରାଜି ହୋଇଥିଲେ। ବର୍ତ୍ତମାନର ସରକାର କ୍ଷମତାକୁ ଆସିଲା ପରେ ବିଧାନସଭାର ସବୁ କାର୍ଯ୍ୟ ଇଂରେଜୀରେ ଚାଲିଥିଲା। ଆନ୍ଦୋଳନ ଏବଂ ଜନସାଧାରଣଙ୍କ ଦାବୀ ଫଳରେ ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ୨୦୧୬ ଅଗଷ୍ଟ ୧୩ ତାରିଖରେ ସରକାର ନିୟମାବଳୀ ପ୍ରଣୟନ ମଧ୍ୟ

କରିଥିଲେ। ସେଇ ମାସ ୧୬ ତାରିଖରୁ ଏହି ଆଇନ ଅନୁଯାୟୀ ପ୍ରଶାସନ, କୋର୍ଟ କଚେରିର କାର୍ଯ୍ୟ ଓଡ଼ିଆରେ କରିବା ସହିତ ବାଣିଜ୍ୟ ବ୍ୟବସାୟ ପ୍ରତିଷ୍ଠାନର ନାମ ଓଡ଼ିଆରେ ଲେଖିବାକୁ ଘୋଷଣା କରିଥିଲେ। ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଜଣେ ସରକାରୀ ଯୁଗ୍ମ ସଚିବଙ୍କ ଅଧ୍ୟକ୍ଷତାରେ ଏକ ଭାଷା ଡିଭିଜନ ମଧ୍ୟ ଗଠନ ହୋଇଥିଲା। ପ୍ରତି ଛଅମାସରେ ଥରେ ଲେଖାଏଁ ଡିଭିଜନର କାର୍ଯ୍ୟକୁ ସମୀକ୍ଷା କରିବା ପାଇଁ ମୁଖ୍ୟ ଶାସନ ସଚିବଙ୍କ ଉପରେ ଦାୟିତ୍ୱ ଅର୍ପଣ କରାଯାଇଥିଲା। ରାଜ୍ୟ ସରକାରଙ୍କର ଏଭଳି ବ୍ୟବସ୍ଥାକୁ 'ଭାଷା ସୁରକ୍ଷା ସମ୍ମିଳନୀ' ପ୍ରଥମରୁ ବିରୋଧ କରିଥିଲା। କାରଣ ରାଜ୍ୟ ଅମଲାତନ୍ତ୍ର ଭାଷା ଆଇନକୁ କିପରି କାର୍ଯ୍ୟକାରୀ କରୁଛି ତାକୁ ତଦାରଖ କରିବା ପାଇଁ ଏକ କ୍ଷମତାସଂପନ୍ନ ଭାଷା ଆୟୋଗ ଗଠନ କରି ଓ ଆଇନର ଖିଲାଫକାରୀଙ୍କ ବିରୋଧରେ ଦଣ୍ଡବିଧାନର ବ୍ୟବସ୍ଥା ହେବାକୁ 'ଭାଷା ସୁରକ୍ଷା ସମ୍ମିଳନୀ' ପ୍ରସ୍ତାବ ଦେଇଥିଲା। ବିଧାନସଭାରେ ଭାଷା ଆଇନ କାର୍ଯ୍ୟାୟନ ସମ୍ପର୍କରେ ଆଲୋଚନା ବେଳେ ବିରୋଧୀଦଳମାନେ ମଧ୍ୟ ଭାଷା ଆୟୋଗ ଗଠନ ପ୍ରସ୍ତାବକୁ ସମର୍ଥନ ଜଣାଇଥିଲେ। କିନ୍ତୁ ରାଜ୍ୟ ସରକାର ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ। ଅମଲାତନ୍ତ୍ରର କାର୍ଯ୍ୟକୁ ତଦାରଖ, ମୂଲ୍ୟାଙ୍କନ, ସୁପାରିଶ ଓ ଦଣ୍ଡବିଧାନ ପାଇଁ କୌଣସି ଏକ ଅର୍ଦ୍ଧନ୍ୟାୟିକ କ୍ଷମତାସଂପନ୍ନ ଅଥରିଟି ବା ଆୟୋଗ ଗଠନ କଲେ ନାହିଁ। ଏହାର ଫଳସ୍ୱରୂପ ଇତିମଧ୍ୟରେ ଦେଢ଼ବର୍ଷ ବିତିଗଲେ ମଧ୍ୟ ସରକାର ପ୍ରଶାସନିକ, ନ୍ୟାୟବ୍ୟବସ୍ଥା କ୍ଷେତ୍ରରେ ସରକାରୀ ଭାଷା ଆଇନକୁ ଲାଗୁ ହେଲା ନାହିଁ। କାରଣ ରାଜ୍ୟର ଉଚ୍ଚ ଅଧିକାରୀମାନଙ୍କ ମଧ୍ୟରୁ ଅନେକ ଭାଷା ଆଇନକୁ କାର୍ଯ୍ୟକାରୀ କରିବାକୁ ଚାହାନ୍ତି ନାହିଁ। ସେମାନେ ଇତିମଧ୍ୟରେ ଓଡ଼ିଆ ଭାଷାକୁ ଭୁଲିଗଲେଣି। ସେମାନଙ୍କ ମଧ୍ୟରୁ ଆଉ କେତେକ ନିଜ ଦୈନନ୍ଦିନ ବିଭାଗୀୟ କାର୍ଯ୍ୟରେ ଏତେ ବ୍ୟସ୍ତ ଯେ, ଭାଷା ଆଇନକୁ କାର୍ଯ୍ୟକାରୀ କଲାଭଳି ସେମାନଙ୍କର ସମୟ ନାହିଁ। ତା'ଛଡ଼ା ରାଜ୍ୟରେ ରାଜନୈତିକ ନେତୃତ୍ୱର ମଧ୍ୟ ଅମଲାତନ୍ତ୍ରକୁ ବାଧ୍ୟ କଲାଭଳି ଶକ୍ତି ନାହିଁ କି ଇଚ୍ଛା ନାହିଁ। ଫଳରେ ଅମଲାତନ୍ତ୍ରର କାର୍ଯ୍ୟକୁ ତଦାରଖ କଲାଭଳି କୌଣସି କମିଶନ ବା ଆୟୋଗ ଗଠନ କରିବାକୁ ସେମାନେ ଡରୁଛନ୍ତି।

ଏ କଥା ସ୍ୱୀକାର କରିବାକୁ ହେବ ଯେ, ଭାଷା ଆଇନ ଗୃହୀତ ହେବାର ୬୩ବର୍ଷ ପରେ ଏହାକୁ କାର୍ଯ୍ୟକାରୀ କରିବା ଏକ ଜଟିଳ ଏବଂ କଠିନ କାର୍ଯ୍ୟ। କାରଣ ଇତିମଧ୍ୟରେ ଓଡ଼ିଶାର ପ୍ରଶାସନ, ସମାଜ ଓ ଭାଷା ମଧ୍ୟରେ ଅନେକ ପରିବର୍ତ୍ତନ ଆସିଛି। ଇଂରେଜୀର ପ୍ରଭାବ ବହୁତ ବଢ଼ି ଯାଇଛି ତେଣୁ ରାଜ୍ୟର ପ୍ରଶାସନ କ୍ଷେତ୍ରରେ, ବ୍ୟବସାୟ ବାଣିଜ୍ୟ, ଶିକ୍ଷା କ୍ଷେତ୍ରରେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା

ପାଇଁ ବହୁତ ନିଷ୍ଠା ଓ ଉଦ୍ୟମ ଆବଶ୍ୟକ। ଆଇନକୁ ଯେଉଁମାନେ କାର୍ଯ୍ୟକାରୀ କରିବେ ସେମାନଙ୍କ ମଧ୍ୟରୁ ଅନେକ ଅଭ୍ୟାସ ଅଭାବରୁ ଓଡ଼ିଆରେ ଲେଖିବା, ପଢ଼ିବା ଭୁଲିଗଲେଣି। କମ୍ପ୍ୟୁଟରର ବ୍ୟାପକ ବ୍ୟବହାର ସାଧାରଣ କାର୍ଯ୍ୟକୁ ଯେତିକି ସହଜ କରିଛି ତାକୁ ସାଧାରଣ ଭାବେ ସବୁ କ୍ଷେତ୍ରରେ ବ୍ୟବହାର କରିବା ମଧ୍ୟ ଏକ କଠିନ କାର୍ଯ୍ୟ। ଓଡ଼ିଆ ଭାଷାର କମ୍ପ୍ୟୁଟରୀକରଣ ବର୍ତ୍ତମାନ ସୁଦ୍ଧା ଆଶାନୁରୂପ ହୋଇପାରି ନାହିଁ ତେଣୁକରି ରାଜନୈତିକ ସ୍ତରରେ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଯଥେଷ୍ଟ ଇଚ୍ଛା, ବିଶେଷକରି ମୁଖ୍ୟମନ୍ତ୍ରୀଙ୍କ ଦୃଢ଼ଇଚ୍ଛା ନ ରହିଲେ ଅମଲାତନ୍ତ୍ର ଏହକୁ କାର୍ଯ୍ୟକାରୀ କରିବ ନାହିଁ। ମୁଖ୍ୟମନ୍ତ୍ରୀଙ୍କର ବଡ଼ ସମସ୍ୟାଟି ହେଉଛି ସେ ନିଜେ ଓଡ଼ିଆ ଭାଷାରେ ଫାଇଲପତ୍ର ପଢ଼ି ପାରିବେ ନାହିଁ ବା ସେସବୁ ଉପରେ ଟିପ୍ପଣୀ ଲେଖି ପାରିବେ ନାହିଁ। ତାଙ୍କରି ପାଖରେ ବିଭିନ୍ନ ବିଭାଗର ଶେଷ ଫାଇଲଟି ଅଟକି ଯିବ। ଅନ୍ୟ ଦିଗରେ ଓଡ଼ିଶାରେ ଏହି ଐତିହାସିକ ସରକାରୀ ଭାଷା ଆଇନ କାର୍ଯ୍ୟକାରୀ ନହେଲେ ଓଡ଼ିଆ ଭାଷା କ୍ରମଶଃ ଲୋପ ପାଇଯିବାର ଆଶଙ୍କା ଦେଖାଦେଇଛି। ବଙ୍ଗଳାର ମେଦିନପୁର, ଝାଡଖଣ୍ଡ, ଛତିଶଗଡ଼ ଓ ଆନ୍ଧ୍ରରେ ଏହି ପ୍ରକ୍ରିୟା ମଧ୍ୟ ଦେଇ ଓଡ଼ିଆ ଭାଷାର ବ୍ୟବହାର କମିକମି ଶେଷରେ ଲୋପ ପାଇଯାଇଛି ବା ଲୋପ ପାଇବାକୁ ବସିଛି। ତେଣୁକରି ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ଉପରେ ଭାଷା ଆନ୍ଦୋଳନକାରୀମାନେ ଗୁରୁତ୍ୱ ଦେଇ ଆସିଛନ୍ତି ଏବଂ ସେମାନଙ୍କର ଆନ୍ଦୋଳନ ଆଜି ବି ଅବ୍ୟାହତ ରହିଛି।

ଗତ ୨୦୧୬ ମଇ ମାସ ୧୮ ତାରିଖରେ ଭାଷା ସୁରକ୍ଷା ସମ୍ମିଳନୀ ପକ୍ଷରୁ ଏକ ପ୍ରତିନିଧି ଦଳ ମୁଖ୍ୟମନ୍ତ୍ରୀଙ୍କୁ ସଚିବାଳୟରେ ଭେଟି ସରକାରୀ ଭାଷା ଆୟୋଗ ଗଠନର ଆବଶ୍ୟକତା ସଂପର୍କରେ ବୁଝାଇଥିଲେ। ଏଥି ସହିତ ଓଡ଼ିଆ ସରକାରୀ ଭାଷା ଆୟୋଗର ରୂପରେଖ, କାର୍ଯ୍ୟକଳାପ, କ୍ଷମତା କ'ଣ ହେବ ସେସବୁକୁ ନେଇ ପ୍ରସ୍ତୁତ ଏକ ଚିଠା ମଧ୍ୟ ତାଙ୍କୁ ପ୍ରଦାନ କରିଥିଲେ। ଅନ୍ୟ ରାଜ୍ୟମାନଙ୍କ ପରି ଏହି ଭାଷା ଆୟୋଗରେ ଅଧ୍ୟକ୍ଷଙ୍କ ସମେତ ୭ ଜଣ ସଦସ୍ୟ ରହିବେ। ଆୟୋଗର ଅଧ୍ୟକ୍ଷ ହେବେ ଜଣେ ଓଡ଼ିଆ ଭାଷାପ୍ରେମୀ, ଯାହାଙ୍କର ସାହିତ୍ୟ ଜଗତକୁ ଅବଦାନ ରହିଥିବ ଓ ନିଜେ ଜଣେ ଦକ୍ଷତାସଂପନ୍ନ ନିର୍ଭୀକ ବ୍ୟକ୍ତି ହୋଇଥିବେ। ଅନ୍ୟ ସଦସ୍ୟମାନଙ୍କ ମଧ୍ୟରେ ରହିବେ ଜଣେ ଭାଷାବିତ୍, ପ୍ରଶାସନିକ ଅଭିଜ୍ଞତା ସଂପନ୍ନ ପୂର୍ବତନ ସରକାରୀ ଅଧିକାରୀ, ସାହିତ୍ୟିକ, ରାଜ୍ୟ ସରକାରଙ୍କ ଆଇନ ବିଭାଗର ସଚିବ ଓ ସରକାରଙ୍କ କମ୍ପ୍ୟୁଟର ବିଭାଗର ନିର୍ଦ୍ଦେଶକ। ଭାଷା ଆୟୋଗର ସଚିବ ରୂପେ କାର୍ଯ୍ୟ କରିବେ ରାଜ୍ୟ ସରକାରଙ୍କର ଜଣେ ଯୁଗ୍ମ ସଚିବ ପାହ୍ୟା ବା ତଦୂର୍ଦ୍ଧ୍ୱ ପଦବୀର ଅଧିକାରୀ।

ଭାଷା ଆୟୋଗର କାର୍ଯ୍ୟାବଳୀ ମଧ୍ୟରେ ରହିବ ସରକାରଙ୍କର ବିଭିନ୍ନ ବିଭାଗ ସମେତ ବିଷ୍ୱର ବିଭାଗ, ବିଧାନସଭା ଏବଂ ବାଣିଜ୍ୟ ବ୍ୟବସାୟିକ ସଂସ୍ଥା ତଥା କେନ୍ଦ୍ର ଓ ଅନ୍ୟ ରାଜ୍ୟର ସରକାରୀ କାର୍ଯ୍ୟାଳୟ, ବ୍ୟାଙ୍କମାନେ ଓଡ଼ିଆ ଭାଷାକୁ ଓଡ଼ିଶାରେ କିପରି ସେମାନଙ୍କ କାର୍ଯ୍ୟରେ ବ୍ୟବହାର କରୁଛନ୍ତି ତା'ର ତଦାରଖ କରିବା, ମୂଲ୍ୟାଙ୍କନ କରିବା, କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ପରାମର୍ଶ ଦେବା, ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକୀୟ ଭିତ୍ତିଭୂମି, ପ୍ରଶିକ୍ଷଣ, ପ୍ରୋତ୍ସାହନ ସମେତ ଯେଉଁମାନେ ଆଇନକୁ କାର୍ଯ୍ୟକାରୀ କରୁନାହାନ୍ତି ସେମାନଙ୍କ ବିରୋଧରେ ପଦକ୍ଷେପ ନେବାକୁ ନିର୍ଦ୍ଦିଷ୍ଟ ବିଭାଗକୁ ସୁପାରିଶ କରିବା। ପ୍ରତି ୬ମାସରେ ଆୟୋଗ ତାଙ୍କର କାର୍ଯ୍ୟାବଳୀ ସଂପର୍କରେ ଏକ ରିପୋର୍ଟ ସରକାରଙ୍କୁ ପ୍ରଦାନ କରିବେ ଏବଂ ସରକାର ଏହାକୁ ବିଧାନସଭାରେ ଆଲୋଚନା ପାଇଁ ଉପସ୍ଥାପନ କରିବେ। ଆୟୋଗର ଅଧ୍ୟକ୍ଷ, ସଦସ୍ୟମାନଙ୍କୁ ରାଜ୍ୟ ସରକାର ନିଯୁକ୍ତ କରିବେ ଓ ସେମାନଙ୍କ କାର୍ଯ୍ୟକାଳ ସ୍ଥିର କରିବେ। ଏହି ଉକ୍ତ ଆୟୋଗର ଏକ ସରକାରୀ ଚିଠା ମୁଖ୍ୟମନ୍ତ୍ରୀଙ୍କ ସମେତ ସମସ୍ତ ମନ୍ତ୍ରୀ, ମୁଖ୍ୟ ସଚିବଙ୍କଠାରୁ ଆରମ୍ଭ କରି ଅନ୍ୟ ସଚିବମାନଙ୍କୁ 'ଭାଷା ସୁରକ୍ଷା ସମ୍ମିଳନୀ' ପ୍ରଦାନ କରିଥିଲା। ମୁଖ୍ୟମନ୍ତ୍ରୀ ଏହି ଅର୍ଦ୍ଧନ୍ୟାୟିକ କ୍ଷମତାସଂପନ୍ନ ଭାଷା ଆୟୋଗ ଗଠନ କରିବାକୁ ଆଶ୍ୱାସନା ଦେଇଥିଲେ।

ଅନେକ ମାସ ନିରବ ରହିଲା ପରେ ରାଜ୍ୟ ସରକାର ବିଜେଡ଼ିର ୨୦ତମ ପ୍ରତିଷ୍ଠା ଦିବସ ଉପଲକ୍ଷେ ପୁରୀରେ ଆୟୋଜିତ ଏକ ରାଜନୈତିକ ପରିବେଶ ମଧ୍ୟରେ ଓଡ଼ିଆ ଭାଷା ସାହିତ୍ୟର ବିକାଶ ପାଇଁ ଏକ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଘୋଷଣା କରିଛନ୍ତି। ଏସବୁ ମଧ୍ୟରେ ଥିବା ଅଧିକାଂଶ କାର୍ଯ୍ୟ କରିବା ନିମିତ୍ତ ଭାଷା ସୁରକ୍ଷା ସମ୍ମିଳନୀ ପାଞ୍ଚବର୍ଷ ଧରି ଦାବି କରି ଆସିଛି। ସରକାର ସେସବୁକୁ କାର୍ଯ୍ୟକାରୀ କରିବା ପାଇଁ ଏକାଧିକବାର ଘୋଷଣା କରି ବାରମ୍ବାର ବିଫଳ ହୋଇଛନ୍ତି। ଯେଉଁ କେତୋଟି ନୂତନ କାର୍ଯ୍ୟକ୍ରମ ଘୋଷିତ ହୋଇଛି ତନ୍ମଧ୍ୟରେ ଅଛି ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ପାଇଁ ଏକ ଭାଷା ଆୟୋଗ ଗଠନ, ଓଡ଼ିଆ ପିଲାମାନଙ୍କୁ ଓଡ଼ିଆ ପଢ଼ିବା ପାଇଁ ପ୍ରୋତ୍ସାହନ, ପୁସ୍ତକମେଳା ଓ ବିଶ୍ୱ ଓଡ଼ିଆ ସମ୍ମିଳନୀ ଆଦିର ଆୟୋଜନ। ରାଜ୍ୟରେ ପୁସ୍ତକମେଳା ସର୍ବତ୍ର ଅନୁଷ୍ଠିତ ହେଉଛି ଏବଂ ଅତୀତରେ ବିଶ୍ୱ ଓଡ଼ିଆ ସମ୍ମିଳନୀ ମଧ୍ୟ ଅନୁଷ୍ଠିତ ହୋଇଯାଇଛି। ଏ ସବୁ ପୁଣି ଅନୁଷ୍ଠିତ ହେଲେ ସ୍ୱାଗତ କରିବାର କଥା। କିନ୍ତୁ ଗତ ପାଞ୍ଚବର୍ଷ ଧରି ରାଜ୍ୟରେ ଚାଲିଥିବା ଭାଷା ଆନ୍ଦୋଳନର ସବୁଠାରୁ ମୁଖ୍ୟ ଦାବିଟି ଏହି ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ସ୍ଥାନ ପାଇନାହିଁ। ତାହାକୁ ସରକାର ଇଚ୍ଛାକୃତ ଭାବେ ଏଡାଇ ଯାଇଛନ୍ତି ବା ଚତୁରତାର ସହିତ ଲୋକଙ୍କ ମଧ୍ୟରେ ଭ୍ରମ

ସୃଷ୍ଟି କରିବା ପାଇଁ ଏହି ନାମରେ ଭିନ୍ନ ଏକ ଆୟୋଗର ନାମ ଘୋଷଣା କରିଛନ୍ତି। ଭାଷା ସୁରକ୍ଷା ଆନ୍ଦୋଳନର ଦାବୀଟି ହେଉଛି, ଗତ ୬୩ବର୍ଷ ଧରି କାର୍ଯ୍ୟକାରୀ ନହୋଇ ପଡ଼ିରହିଥିବା ୧୯୫୪ ସରକାରୀ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଅନ୍ୟ ରାଜ୍ୟମାନଙ୍କ ପରି ଆମ ରାଜ୍ୟରେ ଏକ ଅର୍ଦ୍ଧନ୍ୟାୟିକ ସରକାରୀ ଭାଷା ଆୟୋଗ ବା ଲାଙ୍ଗୁଏଜ୍ କମିଶନ ଗଠନ କରିବା। ଆମ ରାଜ୍ୟରେ ଏହି ଭାଷା ଆୟୋଗ ନ ଥିବାରୁ ଆମ ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ଆଇନଟି ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇପାରିନାହିଁ।

ସରକାର ତାହା ନକରି ଲୋକଙ୍କ ମଧ୍ୟରେ ଏକ ଭ୍ରମ ଧାରଣା ସୃଷ୍ଟି କରିବା ପାଇଁ ୧୯୫୪ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ନିମିତ୍ତ ଏକ ସରକାରୀ ଭାଷା ଆୟୋଗ ଗଠନ କରିବା ପରିବର୍ତ୍ତେ ଓଡ଼ିଆ ଭାଷାର ପ୍ରଚାର ପ୍ରସାର ପାଇଁ ଆୟୋଗ ଗଠନ କରିବାକୁ ଘୋଷଣା କରିଛନ୍ତି। ସରକାରଙ୍କର ଏହି ବିଭ୍ରାନ୍ତକାରୀ ବାର୍ତ୍ତାଟି ଭାଷା ଆନ୍ଦୋଳନକୁ ବିଭ୍ରାନ୍ତ କରିବା ପାଇଁ ନିଶ୍ଚୟ ଉଦ୍ଦିଷ୍ଟ। କାରଣ ଓଡ଼ିଆ ଭାଷାର ପ୍ରଚାର ପ୍ରସାର ପାଇଁ ଓଡ଼ିଆ ଭାଷା ପ୍ରତିଷ୍ଠାନ, ସାହିତ୍ୟ ଏକାଡେମି, ପ୍ରସ୍ତାବିତ ଓଡ଼ିଆ ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ଶିକ୍ଷା ପ୍ରତିଷ୍ଠାନ ସବୁ ରହିଛନ୍ତି। ସେ ସବୁ ପ୍ରତିଷ୍ଠାନକୁ ସକ୍ରିୟ କରିବା ପାଇଁ ଏକ ଆୟୋଗ ଗଠନ କରିବାକୁ କାହାରି ଆପତ୍ତି ନାହିଁ। କିନ୍ତୁ ଯେଉଁ ଭାଷା ଆଇନକୁ ୬୩ବର୍ଷ ଧରି କାର୍ଯ୍ୟକାରୀ ନ କରିବା ହେତୁ ଓଡ଼ିଆ ଲୋକେ ନିଜ ମାତୃଭାଷାରେ ଶାସନ, ନ୍ୟାୟ ପାଇପାରୁ ନାହାନ୍ତି, ଓଡ଼ିଆ ପିଲାଙ୍କ ପାଇଁ ଓଡ଼ିଆ ଭାଷା ଜୀବନ ଜୀବିକାର ଭାଷା ହୋଇପାରୁନି, ଇଂରେଜୀରେ ସବୁ କାର୍ଯ୍ୟାଳୟ ଚାଲୁଥିବାରୁ ଲୋକେ ଓଡ଼ିଆକୁ ଛାଡ଼ି ଇଂରେଜୀ ଆଡ଼କୁ ଧାଉଁଛନ୍ତି। ସେଇ ଭାଷା ଆଇନକୁ କାର୍ଯ୍ୟକାରୀ ନ କରିବା ହେତୁ ପ୍ରଶାସନ, ନ୍ୟାୟାଳୟ, ବ୍ୟବସାୟ ବାଣିଜ୍ୟ ଆଦି କ୍ଷେତ୍ରରେ ଓଡ଼ିଆ ଭାଷା ଲୋପ ପାଇବାକୁ ବସିଛି। ଏଭଳି ଏକ ଐତିହାସିକ ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଏକ ସ୍ୱତନ୍ତ୍ର କ୍ଷମତାସଂପନ୍ନ ସରକାରୀ ଭାଷା ଆୟୋଗ ଗଠନ ପାଇଁ ରାଜ୍ୟ ସରକାର ୪କୋଟି ଓଡ଼ିଆଙ୍କର ମୁଖ୍ୟ ଦାବୀକୁ କିପରି ଭୁଲିଗଲେ ? ସରକାର ଆହୁରି ଭୁଲିଗଲେ ଓଡ଼ିଆ ଜନଜୀବନ ଓ ଓଡ଼ିଆ ଭାଷାକୁ ଇଂରେଜୀ ଓ ହିନ୍ଦୀ କ୍ରମଶଃ ଗ୍ରାସ କରିବାରେ ଲାଗିଛି। ଏହି ମାରାତ୍ମକ ପ୍ରକ୍ରିୟାକୁ ରୋକିବା ପାଇଁ ସରକାର କୌଣସି ଛଳନାର ଆଶ୍ରୟ ନନେଇ ଓଡ଼ିଆ ଭାଷା ଆଇନକୁ କାର୍ଯ୍ୟକାରୀ କରିବା ନିମିତ୍ତ ଏକ ସଶକ୍ତ ସରକାରୀ ଭାଷା ଆୟୋଗ ଗଠନ କରନ୍ତୁ। ତାହା ନକରି ଓଡ଼ିଆମାନଙ୍କୁ ଭଣ୍ଡାଇବା ପାଇଁ ଆମ୍ବ ଦେବା ପରିବର୍ତ୍ତେ ଆମ୍ବଡ଼ା ଧରାଇଲେ ସମସ୍ୟାର ସମାଧାନ ହେବନାହିଁ।



# ବିଶ୍ୱ ମାତୃଭାଷା ଦିବସରେ ଓଡ଼ିଆ ଭାଷାର ସୁରକ୍ଷା ଚିନ୍ତା

ଆମ ପୃଥିବୀରେ ଅନେକ ଭାଷା ଓ ସଂସ୍କୃତି ରହିଛି। ପ୍ରତ୍ୟେକ ଭାଷା ହେଉଛି ଗୋଟିଏ ଗୋଟିଏ ମାତୃଭାଷା। ମା' ଓ ମାଟିର ଭାଷା। ଭାଷା ହେଉଛି ପ୍ରତ୍ୟେକ ଜାତିର ପରିଚୟ। ଜାତିର ମହାନ ସଂପଦ। ଭାଷା ଜାତିକୁ ବାନ୍ଧିରଖେ। ତା'ର ସାହିତ୍ୟ ସଂସ୍କୃତିର ବାହକ ଓ ସଂରକ୍ଷକ ରୂପେ ଯୁଗ ପରେ ଯୁଗ ସେସବୁକୁ ବଂଚାଇ ରଖେ। ମାନବ ଇତିହାସରେ ସ୍ୱାଧୀନତା, ଗଣତନ୍ତ୍ର ଓ ମାନବିକ ଅଧିକାର ପାଇଁ ଯେପରି ବିପ୍ଳବ ହୋଇଛି ଠିକ୍ ସେଇପରି ମାତୃଭାଷାର ସୁରକ୍ଷା ପାଇଁ ଗଣସଂଗ୍ରାମ ମଧ୍ୟ ଘଟିଛି। ଏହିସବୁ ସଂଗ୍ରାମରେ ଏଭଳି ଗୋଟିଏ ଗୋଟିଏ ଘଟଣା ଘଟିଛି ଯାହା ନିର୍ଦ୍ଦିଷ୍ଟ ଜାତିର ମାତୃଭାଷାକୁ ବଂଚାଇବା ସହିତ ମାନବ ଜାତିର ଅଗ୍ରଗତି କ୍ଷେତ୍ରରେ ବର୍ତ୍ତିକା ଭଳି କାର୍ଯ୍ୟ କରିଛି। ସେହିଭଳି ଏକ ଐତିହାସିକ ଘଟଣା ଘଟିଥିଲା ୧୯୫୨ ମସିହା ଫେବୃଆରୀ ୨୧ ତାରିଖରେ, ତତ୍କାଳୀନ ପୂର୍ବ ପାକିସ୍ଥାନରେ। ୧୯୪୭ ମସିହାରେ ଧର୍ମଭିତ୍ତିକ ପାକିସ୍ଥାନ ସୃଷ୍ଟି ହେବାପରେ ସେଠାରେ ଉର୍ଦ୍ଦୁଭାଷାକୁ ପାକିସ୍ଥାନର ରାଷ୍ଟ୍ରଭାଷାରୂପେ ଘୋଷଣା କରାଯାଇଥିଲା। ଉଭୟ ପଶ୍ଚିମ ଓ ପୂର୍ବ ପାକିସ୍ଥାନ

(ବର୍ତ୍ତମାନ ବାଂଲାଦେଶ)ରେ ସମସ୍ତ ସରକାରୀ କାର୍ଯ୍ୟ, ନ୍ୟାୟାଳୟ ଓ ଶିକ୍ଷାଦାନ ଆଜି କାର୍ଯ୍ୟ ଉର୍ଦ୍ଦୁ ଭାଷାରେ ଚାଲିବା ପାଇଁ ନିର୍ଦ୍ଦେଶନାମା ଜାରି ହେଲା। ଏହାଦ୍ୱାରା ପୂର୍ବ ପାକିସ୍ତାନର ଅଧିବାସୀମାନଙ୍କର ମାତୃଭାଷା ବଂଗଳା ଲୋପ ପାଇବାକୁ ବସିଲା। ଏହାକୁ ରୋକିବା ପାଇଁ ସେଦିନ ପୂର୍ବ ପାକିସ୍ତାନର ବଙ୍ଗଭାଷୀ ବୁଦ୍ଧିଜୀବୀ, ଛାତ୍ର ଓ ଜାତୀୟବାଦୀ ରାଜନୈତିକ ଦଳମାନେ ଆଗେଇ ଆସିଥିଲେ। ଧର୍ମର ଆକର୍ଷଣ ଅପେକ୍ଷା ମାତୃଭାଷାର ପ୍ରେମ ସେମାନଙ୍କୁ ଅଧିକ ଆକୃଷ୍ଟ କରିଥିଲା। ସେମାନେ ପାକିସ୍ତାନର ଏହି ଷଡଯନ୍ତ୍ର ବିରୁଦ୍ଧରେ ପ୍ରତ୍ୟକ୍ଷ ଆନ୍ଦୋଳନ କରିଥିଲେ। ପାକିସ୍ତାନର ଶାସକବର୍ଗ ପୂର୍ବ ପାକିସ୍ତାନର ଏହି ଭାଷା ସୁରକ୍ଷା ଆନ୍ଦୋଳନକୁ ଦବେଇ ଦେବାପାଇଁ ସବୁପ୍ରକାର ଦମନମୂଳକ କାର୍ଯ୍ୟ ଆରମ୍ଭ କଲେ। ଭାଷା ଆନ୍ଦୋଳନ ଦବି ନ ଯାଇ ପୂର୍ବ ପାକିସ୍ତାନର ରାଜଧାନୀ ଢାକାରୁ ଅନ୍ୟ ସହରକୁ ବ୍ୟାପିବାରେ ଲାଗିଲା। ୧୯୫୨ଫେବୃଆରୀ ୨୧ ତାରିଖ ଦିନ ସମଗ୍ର ଢାକା ସହରକୁ ଅଚଳ କରିଦେବା ପାଇଁ ଆନ୍ଦୋଳନକାରୀମାନେ ଧର୍ମଘଟର ଆହ୍ୱାନ ଦେଲେ। ସରକାର ଜାରି କରିଥିବା ନିଷେଧାଜ୍ଞାକୁ ଭଙ୍ଗକରି ଲକ୍ଷଲକ୍ଷ ଛାତ୍ରଛାତ୍ରୀ ଶୋଭାଯାତ୍ରା କରି ପ୍ରାଦେଶିକ ବିଧାନସଭା ଆଡ଼କୁ ଆଗେଇ ଚାଲିଲେ। ଅବସ୍ଥା ଅସମ୍ଭାଳ ହେବାରୁ ପାକିସ୍ତାନୀ ଅର୍ଦ୍ଧସୈନିକ ବାହିନୀ ଆକ୍ରମଣ ଆରମ୍ଭ କରିଦେଲା। ଘଟଣାସ୍ଥଳରେ ୪ ଜଣ ଛାତ୍ର ଗୁଳି ଚୋଟରେ ଟଳିପଡ଼ିଲେ। ଶହଶହ ଛାତ୍ରଛାତ୍ରୀ ଗୁରୁତର ଭାବେ ଆହତ ହେଲେ। ବଣର ନିଆଁ ପରି ଭାଷା ସୁରକ୍ଷା ଆନ୍ଦୋଳନ ସମଗ୍ର ପୂର୍ବ ପାକିସ୍ତାନରେ ବ୍ୟାପି ଯାଇଥିଲା।

ଆନ୍ଦୋଳନର ବ୍ୟାପକତା ଓ ତୀବ୍ରତାକୁ ଲକ୍ଷ୍ୟକରି ପାକିସ୍ତାନର ସମ୍ବିଧାନ ପ୍ରଣୟନକାରୀ ସଭା ଉର୍ଦ୍ଦୁ ସହିତ ବଙ୍ଗଳାକୁ ପାକିସ୍ତାନର ଜାତୀୟ ଭାଷାରୂପେ ସ୍ୱୀକୃତି ପ୍ରଦାନ କଲେ। ଏହିଦିନ ଠାରୁ ପୂର୍ବ ପାକିସ୍ତାନର ପ୍ରଶାସନିକ, ନ୍ୟାୟିକ ଓ ଶିକ୍ଷାଦାନର କାର୍ଯ୍ୟ ଚାଲିଲା ବଙ୍ଗଳା ଭାଷାରେ। ଏହା କେବଳ ବଙ୍ଗଭାଷା ପାଇଁ ନୁହେଁ ପୃଥିବୀର ସମସ୍ତ ବଙ୍ଗଭାଷୀଙ୍କ ପାଇଁ ଥିଲା ଏକ ଐତିହାସିକ ବିଜୟ। ଏହି ଘଟଣାଟି ପୂର୍ବ ପାକିସ୍ତାନର ଆଗାମୀ ମୁକ୍ତି ସଂଗ୍ରାମ ପାଇଁ ଥିଲା ଏକ ପ୍ରେରଣାର ଉତ୍ସ। ଭାଷା ସୁରକ୍ଷାର ସ୍ଫୁଲିଙ୍ଗ କ୍ରମଶଃ ବାଂଲାଦେଶର ବୈପ୍ଳବିକ ଜାତୀୟ ସଂଗ୍ରାମରେ ପରିଣତ ହୋଇଥିଲା। ଶେଷକୁ ବାଂଲାଦେଶ ପାକିସ୍ତାନରୁ ସଂପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇଗଲା ଏବଂ ବଙ୍ଗଳା ଭାଷା ବାଂଲାଦେଶର ସରକାରୀ ଭାଷାର ମର୍ଯ୍ୟାଦା ଲାଭ କଲା। ୧୯୫୬ ମସିହାରେ ଜାତୀୟତାବାଦୀ ଆୱାମୀ ଲିଗ୍ ଦଳ ପୂର୍ବ ପାକିସ୍ତାନରେ କ୍ଷମତାକୁ ଆସିବା ପରେ ୧୯୫୨ ଫେବୃଆରୀ ୨୧ ତାରିଖରେ ଭାଷା ଆନ୍ଦୋଳନର ସହିଦମାନଙ୍କ ଉଦ୍ଦେଶ୍ୟରେ ରାଜଧାନୀ ଢାକାରେ ଏକ ଅପୂର୍ବ ସହିଦ ମୀନାର ନିର୍ମାଣ କରିଥିଲେ।

ଏହାକୁ ଏପରି ବହୁରଙ୍ଗମଣ୍ଡିତ କାଚରେ ନିର୍ମାଣ କରାଯାଇଛି ଯେ ତାହା ଉପରେ ସୂର୍ଯ୍ୟକିରଣ ପ୍ରତିଫଳିତ ହେଲେ ଦିନର ବିଭିନ୍ନ ସମୟରେ ଏହା ଭିନ୍ନଭିନ୍ନ ଭାବେ ବର୍ଣ୍ଣିଳ ହୋଇଉଠେ। ପୃଥିବୀର ବିଭିନ୍ନ ଦେଶରୁ ଆସୁଥିବା ହଜାର ହଜାର ପର୍ଯ୍ୟଟକ ଓ ରାଷ୍ଟ୍ରନେତାମାନେ ଏହି ସ୍ମୃତିସ୍ତମ୍ଭ ଦେଖି ଆତ୍ମହରା ହୋଇପଡ଼ନ୍ତି। ନିଜର ପ୍ରିୟ ମାତୃଭାଷାକୁ ରକ୍ଷା କରିବା ପାଇଁ ଗୋଟିଏ ଜାତି ବିଶେଷକରି ଛାତ୍ର ଯୁବକମାନେ ଏପରି ଆତ୍ମବଳୀ ଦେଇପାରନ୍ତି ଭାବି ସେମାନଙ୍କ ମୁଣ୍ଡ ନଇଁଯାଏ। ଯେଉଁ ଜାତି ତା'ର ମାତୃଭାଷା ଓ ସ୍ୱାଭିମାନ ପାଇଁ ପ୍ରାଣ ଦେଇପାରେ ସିଏ କେବେ ପରାଜିତ ହୁଏନାହିଁ କି ତା'ର ଭାଷା ସଂସ୍କୃତିର କେବେ ବିଲୟ ଘଟେନାହିଁ।

ଆଧୁନିକ ମାନବ ଇତିହାସରେ ନିଜର ମାତୃଭାଷା ପାଇଁ ଏଭଳି ଆତ୍ମବଳିଦାନ ଓ ପ୍ରେରଣାମୟ ସ୍ମୃତିକୁ ସମ୍ମାନ ଦେଇ ୟୁନେସ୍କୋର ସଦସ୍ୟ ରାଷ୍ଟ୍ରମାନେ ୧୯୯୯ ନଭେମ୍ବର ୧୭ ତାରିଖରେ ଫେବୃଆରୀ ୨୧ କୁ ଆନ୍ତର୍ଜାତିକ ମାତୃଭାଷା ଦିବସ ରୂପେ ଘୋଷଣା କରିଥିଲେ। ୨୦୦୯ ମସିହାରେ ଜାତିସଂଘ ତା'ର ସମସ୍ତ ରାଷ୍ଟ୍ରମାନଙ୍କୁ ଆହ୍ୱାନ ଦେଇଥିଲେ ପୃଥିବୀର ଲୋକେ ବ୍ୟବହାର କରୁଥିବା ସମସ୍ତ ଭାଷାର ବିକାଶ ଓ ସୁରକ୍ଷା କରିବା ପାଇଁ।

ଗୋଟିଏ ଜାତି ଉପରେ ଅନ୍ୟ ଏକ ଜାତିର ଭାଷାକୁ ଲଦିଦେବା ହେଉଛି ଏକ ସାମ୍ରାଜ୍ୟବାଦୀ ବିଚାରଧାରା। ଔପନିବେଶିକ ଯୁଗରେ ୟୁରୋପର ଉପନିବେଶୀ ଶାସକମାନେ ଏସିଆ ଓ ଆଫ୍ରିକାର ବହୁ ଭାଷାକୁ ଲୋପ କରିଦେଇଛନ୍ତି କିମ୍ବା ଏସବୁ ଉପରେ ଇଂରେଜୀ, ଫରାସୀ, ପର୍ତ୍ତୁଗୀଜ୍ ଭାଷାକୁ ଚପେଇ ଦେଇଛନ୍ତି। ଜଗତୀକରଣ ଯୁଗରେ ମାତୃଭାଷାକୁ ସୁରକ୍ଷିତ କରି ଏହାର ବିକାଶ ସାଧନ କରିବା ପୂର୍ବ ଅପେକ୍ଷା ଆହୁରି କଠିନ ହୋଇପଡ଼ିଛି। ଦେଶର ଅନ୍ୟାନ୍ୟ ରାଜ୍ୟ ତଥା ବିଦେଶ ସହିତ ଯୋଗାଯୋଗ ରଖିବା ପାଇଁ ଇଂରେଜୀ ଓ ଅନ୍ୟ ଭାଷାଗୁଡ଼ିକୁ ଶିଖିବାକୁ ହେବ। କିନ୍ତୁ ମାତୃଭାଷାକୁ ପାରିବାରିକ, ସାମାଜିକ, ଶାସନ ଓ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ବ୍ୟାପକଭାବେ ବ୍ୟବହାର କରିବା ସହିତ ଶିକ୍ଷା, ଗବେଷଣା, ପ୍ରକାଶନ ଆଦି ଉପରେ ଅଧିକ ଧ୍ୟାନ ନଦେଲେ ମାତୃଭାଷାର ବିକାଶ ସାଧନ ହୋଇପାରିବ ନାହିଁ। ପୃଥିବୀର ସମସ୍ତ ଦେଶ, ବିଶେଷକରି ଆଫ୍ରିକା ଓ ଏସିଆର ଦେଶମାନେ ଏବେ ଏହି ଭାଷାନୀତି ଅବଲମ୍ବନ କରୁଛନ୍ତି। ଆମକୁ ମଧ କରିବାକୁ ହେବ। ଆମକୁ ମନେ ରଖିବାକୁ ହେବ ପୃଥିବୀର ୬୦୦୦ରୁ ଅଧିକ ଭାଷା ମଧରୁ ଅର୍ଦ୍ଧେକ ଭାଷା ଆଜି ବିପଦାପନ୍ନ। ଏହି ଧ୍ୱଂସମୁଖୀ ପ୍ରକ୍ରିୟାକୁ ରୋକିବା ପାଇଁ ଜାତିସଂଘ ସର୍ବଦା ଆହ୍ୱାନ ଦେଇଆସିଛି। ପ୍ରତ୍ୟେକ ଭାଷାକୁ ବଂଚାଇ ରଖିବା ଏବଂ ଭାଷା ଓ ସାଂସ୍କୃତିକ ବିବିଧତାକୁ ପ୍ରୋତ୍ସାହିତ

କରି ପ୍ରତ୍ୟେକ ମାତୃଭାଷାର ସୁରକ୍ଷା ଓ ବିକାଶ ସାଧନ କରିବା ହେଉଛି ଆନ୍ତର୍ଜାତିକ ମାତୃଭାଷା ଦିବସର ଆହ୍ୱାନ। ଏହି ଆହ୍ୱାନ ଆମ ଦେଶର ଜାତୀୟ ଭାଷାମାନଙ୍କ ସୁରକ୍ଷା ଏବଂ ଉପନିବେଶିକ ଗୋଲାମୀର ପ୍ରତୀକ ଇଂରେଜୀ କବଳରୁ ନିଜର ମାନସିକତାକୁ ମୁକ୍ତ କରି ମାତୃଭାଷା ଉପରେ ପ୍ରାଧାନ୍ୟ ଦେବପାଇଁ ସର୍ବଦା ପ୍ରେରଣା ଯୋଗାଇଥାଏ।

ସ୍ୱାଧୀନତା ଆନ୍ଦୋଳନ ବେଳେ ଗାନ୍ଧିଜୀ ଭାରତୀୟ ଭାଷାମାନଙ୍କର ବିକାଶ ଉପରେ ଗୁରୁତ୍ୱ ଦେଉଥିଲେ। ସେ କହୁଥିଲେ ସ୍ୱାଧୀନତାର ଅର୍ଥ ହେଉଛି ଲୋକଙ୍କ ଭାଷାରେ ଲୋକଙ୍କ ଶାସନ। ସ୍ୱାଧୀନତା ପରେ ଭାରତର ବିଭିନ୍ନ ରାଜ୍ୟ ଇଂରେଜୀ ପରିବର୍ତ୍ତେ ନିଜନିଜର ମାତୃଭାଷାକୁ ରାଜଭାଷାର ସମ୍ମାନ ଦେଇ ପ୍ରଶାସନିକ, ଶିକ୍ଷା, ନ୍ୟାୟାଳୟର ଭାଷାରୂପେ ବ୍ୟବହାର କରିଥିଲେ। ଆମ ଓଡ଼ିଶାରେ ୧୯୫୪ ମସିହାରେ ଓଡ଼ିଆକୁ ସମ୍ମାନ ଦେଇ ଏହାକୁ ସରକାରୀ ଭାଷାରୂପେ ବ୍ୟବହାର କରିବାକୁ ଏକ ଭାଷା ଆଇନ ପ୍ରଣୀତ ହୋଇଥିଲା। କିନ୍ତୁ ପରିତାପର ବିଷୟ ଏଯାଏ ତାହାକୁ କାର୍ଯ୍ୟକାରୀ କରାଗଲା ନାହିଁ। ସରକାର ତଥା ରାଜନୈତିକ ଦଳମାନେ ଭୋଟସର୍ବସ୍ୱ ରାଜନୀତିରେ ଏତେ ମଜ୍ଜି ଯାଇଛନ୍ତି ଯେ ଏଥିପ୍ରତି ଧ୍ୟାନ ଦେଇ ନାହାଁନ୍ତି। ଫଳରେ ଭାଷାର ବ୍ୟବହାର ସଂକୁଚିତ ହେବାରୁ ଏହାର ଅବକ୍ଷୟ ଘଟିଚାଲିଛି। ଭାଷା ପ୍ରତି ହତାଦର ବଢ଼ିଛି। ଅନ୍ୟ ଦିଗରେ ଓଡ଼ିଶାର ସମସ୍ତ କାର୍ଯ୍ୟ ଇଂରେଜୀରେ ଚାଲୁଥିବାରୁ ଓଡ଼ିଆରେ ଉଚ୍ଚଶିକ୍ଷା ଲାଭ କରିଥିବା ଓଡ଼ିଆ ଯୁବପୀଢ଼ି ପାଇଁ ନିଜ ମାତୃଭାଷା ଜୀବନ ଓ ଜୀବିକାର ଭାଷା ହୋଇପାରିନି। ତେଣୁ ସେମାନେ ଓଡ଼ିଆ ପଢ଼ିବାକୁ ଆଗ୍ରହ ପ୍ରକାଶ କରୁନାହାଁନ୍ତି। ଓଡ଼ିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ସେମାନଙ୍କ ପାଇଁ ମୂଲ୍ୟହୀନ ହୋଇଯାଇଛି।

ଏପରି ଘଟିବା ପଛରେ ମୂଳ କାରଣଟି ହେଉଛି ଆମର ବର୍ତ୍ତମାନର ଭାଷାନୀତି। ଏହି ନୀତିର ମୂଳ ଲକ୍ଷ୍ୟ ହେଲା ନିଜର ମାତୃଭାଷାକୁ ହେୟକରି ଇଂରାଜୀ ଭାଷାକୁ ପ୍ରୋତ୍ସାହନ ଦେବା। ସବୁ ସ୍ତରରେ ଇଂରାଜୀ ଭାଷାର ବ୍ୟାପକ ବ୍ୟବହାର କରିବା ଏବଂ ଶାସନ କ୍ଷେତ୍ରରେ ଏହାର ପ୍ରାଧାନ୍ୟ ବଜାୟ ରଖିବା। ଅନୁସନ୍ଧାନରୁ ଜଣାଯାଏ, ଗତ ୧୫ ବର୍ଷ ମଧ୍ୟରେ ଓଡ଼ିଶାରେ ସର୍ବାଧିକ ଇଂରାଜୀ ମାଧ୍ୟମ ବିଦ୍ୟାଳୟର ଆବିର୍ଭାବ ଘଟିଛି। ଓଡ଼ିଆ ମାଧ୍ୟମ ସ୍କୁଲଗୁଡ଼ିକରେ ଓଡ଼ିଆ ଶିକ୍ଷାର ମାନ ଦିନକୁ ଦିନ ନିମ୍ନଗାମୀ ହୋଇଯାଉଛି। ଏହି ନୀତିର ପରିବର୍ତ୍ତନ ନ ହେଲେ ଓଡ଼ିଆ ଭାଷାର ଭବିଷ୍ୟତ ଅନ୍ଧକାରମୟ ହେବ। ଇଂରେଜ ଅମଳର ଏହି ଭାଷାନୀତିକୁ ବଦଳାଇ ନିଜର ମାତୃଭାଷାକୁ ସବୁ କ୍ଷେତ୍ରରେ ପ୍ରାଧାନ୍ୟ ଦେବା ନିମିତ୍ତ ଓଡ଼ିଶାରେ ଭାଷା ସୁରକ୍ଷା

ସମ୍ମିଳନୀ ଗତ ୩ ବର୍ଷ ଧରି ଏକ ଭାଷା ଆନ୍ଦୋଳନ ଚଳେଇ ଆସିଛି। ଏହା ଫଳରେ ଓଡ଼ିଆମାନଙ୍କ ମଧ୍ୟରେ ହଜି ଯାଇଥିବା ଜାତିପ୍ରେମ ଓ ଭାଷାପ୍ରୀତି କିଛି ପରିମାଣରେ ଜାଗ୍ରତ ହୋଇଛି। ସରକାର ଓ ରାଜନୈତିକ ଦଳମାନଙ୍କ ଉପରେ ଏହାର ପ୍ରଭାବ ମଧ୍ୟ ପଡ଼ିଛି। ଏହି ଆନ୍ଦୋଳନ ଯେତେ ବ୍ୟାପକ ହେବ, ଓଡ଼ିଆ ଭାଷା ସେତିକି ସୁରକ୍ଷିତ ଓ ଏହାର ବିକାଶ ସେତିକି ପ୍ରଖର ହେବ। ଆଜି ସମଗ୍ର ବିଶ୍ୱବାସୀ ଫେବ୍ରୁଆରୀ ୨୧କୁ ମାତୃଭାଷା ଦିବସ ଭାବେ ପାଳନ କରୁଛନ୍ତି। ବାଂଲାଦେଶର ମାତୃଭାଷା ପ୍ରେମୀ ସହିଦମାନେ ଡାକ ଦେଉଛନ୍ତି ମାତୃଭାଷାକୁ ଯେଉଁଠି ଅବହେଳା ଓ ଅପମାନିତ କରାଯାଉଛି ତା' ବିରୁଦ୍ଧରେ ସ୍ୱର ଉତ୍ତୋଳନ କର। ଆସନ୍ତୁ ଏହି ଆନ୍ଦୋଳନକୁ ଆହୁରି ଶକ୍ତିଶାଳୀ କରିବା, ବିଶ୍ୱ ମାତୃଭାଷା ଦିବସରେ ନିଜର ପ୍ରିୟ ମାତୃଭାଷାକୁ ରକ୍ଷା କରିବା ଓ ସମ୍ମାନ ଦେବା ପାଇଁ ସଂକଳ୍ପ ନେବା।



# ଭାଷା ଆନ୍ଦୋଳନର ବିଜୟ

ଭାଷା ହେଉଛି ପ୍ରତ୍ୟେକ ଜାତିର ପରିଚୟ । ଭାଷା ଜାତିକୁ ବାନ୍ଧି ରଖେ ଏବଂ ଭାଷା ମରିଗଲେ ଜାତି ମରିଯାଏ । ଭାଷା ବଞ୍ଚିରହେ ତା'ର ବ୍ୟାବହାରିକତାକୁ ନେଇ । ପରିବାର, ସମାଜ, ଶାସନ, ଶିକ୍ଷା, ସାହିତ୍ୟ କ୍ଷେତ୍ରରେ ଭାଷାର ବ୍ୟବହାର ନ ହେଲେ ଭାଷା ମରିଯାଏ । ଶାସ୍ତ୍ରୀୟ ମାନ୍ୟତା ପାଇଥିବା ଭାରତର ଅନ୍ୟତମ ପ୍ରାଚୀନ ଭାଷା ଓଡ଼ିଆର ବ୍ୟାବହାରିକତା ବିଭିନ୍ନ କ୍ଷେତ୍ରରେ କ୍ରମାଗତ ହ୍ରାସ ପାଉଥିବାରୁ ଏହା ସଙ୍କଟର ସମ୍ମୁଖୀନ ହୋଇଛି । ସରକାରୀ ଏବଂ ବେସରକାରୀ ସ୍ତରରେ ଓଡ଼ିଆ ପ୍ରତି ଅବହେଳା ହେତୁ ଏପରି ସ୍ଥିତି ସୃଷ୍ଟି ହୋଇଛି । ୧୯୫୪ ସରକାରୀ ଭାଷା ଆଇନ୍ କାର୍ଯ୍ୟକାରୀ ହୋଇଥିଲେ ଏପରି ଘଟିନଥାନ୍ତା । ଅନ୍ୟ ଦିଗରେ ନିଜ ମାତୃଭାଷାକୁ ବଞ୍ଚାଇବା ଏବଂ ମାତୃଭାଷାରେ ଶାସନ ଓ ନ୍ୟାୟ ପାଇବା ପାଇଁ ଦାବି କରି ଆନ୍ଦୋଳନ କରିବାକୁ ପଡ଼େ ବୋଲି ଓଡ଼ିଶା ଲୋକେ ଅନେକ ଦିନରୁ ଭୁଲି ଯାଇଥିଲେ । ଏହି ଜାତୀୟ ଉଦାସୀନତାକୁ ଭାଙ୍ଗିବା ପାଇଁ ଗତ ୪ ବର୍ଷ ପୂର୍ବେ ଭାଷା ସୁରକ୍ଷା ସମ୍ମିଳନୀ ନେତୃତ୍ୱରେ ଓଡ଼ିଶାରେ ଆରମ୍ଭ ହୋଇଥିଲା ଭାଷା ଆନ୍ଦୋଳନ । ଯେକୌଣସି ଭାଷା ସରକାରୀ ସ୍ତରରେ ରାଜଭାଷାର ସମ୍ମାନ ପାଇଲା ପରେ

ସରକାରୀ ସ୍ତରରେ ବ୍ୟବହୃତ ନ ହେଲେ ତା'ର ବ୍ୟବହାର ଶିକ୍ଷା ଏବଂ ସାମାଜିକ କ୍ଷେତ୍ରରେ କମିକମି ଯାଏ । ଭାଷାର ବ୍ୟବହାର କମିକମି ଗଲେ ତା'ର ଅସ୍ତିତ୍ୱ ସଙ୍କଟର ସମ୍ମୁଖୀନ ହୁଏ ବୋଲି ଓଡ଼ିଶାର ଲୋକଙ୍କୁ ବୁଝାଇବାକୁ ପଡ଼ିଥିଲା । ଏଥିସହିତ ୧୯୫୪ ସରକାରୀ ଭାଷା ଆଇନ୍‌କୁ କାର୍ଯ୍ୟକାରୀ କରିବା ପାଇଁ ଭାଷା ସୁରକ୍ଷା ସମ୍ମିଳନୀ ସାରା ରାଜ୍ୟରେ ଆରମ୍ଭ କରିଥିଲା ଜନଜାଗରଣ ଅଭିଯାନ । ଦୀର୍ଘ ଚାରିବର୍ଷର ରାଜ୍ୟବ୍ୟାପୀ ଆନ୍ଦୋଳନ ଫଳରେ ଓଡ଼ିଶାର ଲୋକେ ଜାଗ୍ରତ ହେବାକୁ ଆରମ୍ଭ କରିଥିଲେ । ଏଥିପାଇଁ ଜିଲ୍ଲା ସ୍ତରରୁ ବ୍ଲକ ସ୍ତର ପର୍ଯ୍ୟନ୍ତ ସଭା ସମ୍ମିଳନୀ ଆଲୋଚନାଚକ୍ର ଠାରୁ ଆରମ୍ଭ କରି ମୁଖ୍ୟମନ୍ତ୍ରୀଙ୍କୁ ଏକ ଲକ୍ଷ ପୋଷ୍ଟକାର୍ଡ ଚିଠି ଲେଖିବା, ଭୁବନେଶ୍ୱରଠାରୁ ଆରମ୍ଭ କରି ସମସ୍ତ ଜିଲ୍ଲାପାଳ ଅଫିସ୍ ଆଗରେ ଗଣଧାରଣା, ମଶାଲ ଶୋଭଯାତ୍ରା ଓ ଅନଶନ ଚାଲିଥିଲା । ୨୦୧୫ ମେ ମାସରେ ସରକାର ଆନ୍ଦୋଳନର ଚାପରେ ଏକ ପାଞ୍ଚଜଣିଆ ମନ୍ତ୍ରୀସ୍ତରୀୟ କମିଟି ଗଠନ କରି ଭାଷା ଆନ୍ଦୋଳନର ଦାବୀକୁ କାର୍ଯ୍ୟକାରୀ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ସେ ପ୍ରତିଶ୍ରୁତି ବର୍ଷାଧିକ କାଳ ପାଳିତ ହେଲା ନାହିଁ । ଲୋକଙ୍କ ମଧ୍ୟରେ ଅସନ୍ତୋଷ ବଢ଼ିବାକୁ ଲାଗିଲା । ବିଧାନସଭାରେ କେତେକ ରାଜନୈତିକ ଦଳ ମଧ୍ୟ ଭାଷା ଆଇନ୍‌କୁ କାର୍ଯ୍ୟକାରୀ କରିବାକୁ ଦାବି କଲେ । ଶେଷକୁ ମୁଖ୍ୟମନ୍ତ୍ରୀ ବୁଦ୍ଧିମତ୍ତାର ପରିଚୟ ଦେଇ ଗତ ୨୧ ତାରିଖରେ ଭାଷା ଆଇନ୍‌କୁ କାର୍ଯ୍ୟକାରୀ କରିବାକୁ ଦାବି କଲେ । ଶେଷକୁ ମୁଖ୍ୟମନ୍ତ୍ରୀ ବୁଦ୍ଧିମତ୍ତାର ପରିଚୟ ଦେଇ ଗତ ୨୧ ତାରିଖରେ ଭାଷା ଆନ୍ଦୋଳନର ମୁଖ୍ୟ ଦାବିଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ଘୋଷଣା କଲେ । ୧୯୫୪ ସରକାରୀ ଭାଷା ଆଇନ୍‌କୁ ଆଗାମୀ ଅଗଷ୍ଟ ୧୫ ମଧ୍ୟରେ କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟପାଳଙ୍କ ଦ୍ୱାରା ଅଧ୍ୟାଦେଶ ଜାରି କରିଛନ୍ତି । ଭାଷା ଆନ୍ଦୋଳନ ପାଇଁ ଏହା ଏକ ବିରାଟ ବିଜୟ । ତେଣୁ ଏହା ଅତ୍ୟନ୍ତ ସ୍ୱାଗତଯୋଗ୍ୟ ।

କିନ୍ତୁ ଘୋଷଣାକୁ କାର୍ଯ୍ୟରେ ପରିଣତ କରିବା ଏକ କଠିନ ପ୍ରକ୍ରିୟା । ଅଭିଜ୍ଞତାରୁ ଦେଖାଯାଏ ମୁଖ୍ୟମନ୍ତ୍ରୀ ଯେଉଁ ପାଞ୍ଚଜଣିଆ ମନ୍ତ୍ରୀସ୍ତରୀୟ ଭାଷା କମିଟି ଗଠନ କରିଥିଲେ ତା' ସହିତ ସମ୍ପୃକ୍ତ ବିଭାଗମାନଙ୍କର ସଚିବମାନଙ୍କର ସମନ୍ୱୟ ରହୁନାହିଁ । ସମନ୍ୱୟ ପ୍ରତିଷ୍ଠା ପାଇଁ ଯେଉଁ ଅଫିସରଙ୍କୁ ଦାୟିତ୍ୱ ଦିଆଯାଇଛି ଓଡ଼ିଆ ଭାଷା ପ୍ରତି ତାଙ୍କର ଆନ୍ତରିକତା ସମ୍ପର୍କରେ ସନ୍ଦେହ ରହିଛି । କମିଟିରେ ଥିବା ମନ୍ତ୍ରୀମାନେ ମଧ୍ୟ ନିଜନିଜ ବିଭାଗର କାର୍ଯ୍ୟ ସହିତ ଅନ୍ୟାନ୍ୟ ରାଜନୈତିକ କାର୍ଯ୍ୟକଳାପରେ ଏତେ ବ୍ୟସ୍ତ ଯେ ଓଡ଼ିଆ ଭାଷା ଆଇନ୍‌କୁ କାର୍ଯ୍ୟକାରୀ କରିବା

ପାଇଁ ଆବଶ୍ୟକୀୟ ପ୍ରସ୍ତୁତି ଓ ଭିତ୍ତିଭୂମି ପ୍ରତିଷ୍ଠା ପ୍ରତି ଯଥେଷ୍ଟ ସମୟ ଓ ଦୃଷ୍ଟି ଦେଇ ପାରୁନାହାନ୍ତି ।

ଭାଷା ଆଇନ୍‌ର କାର୍ଯ୍ୟକାରିତା ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମର ରୂପାୟନ ପାଇଁ ଅମଲାତନ୍ତ୍ରର ଯେଉଁ ନିଷ୍ଠା ଆବଶ୍ୟକ ତାହା ଏବେ ବି ସୃଷ୍ଟି ହୋଇନି । ଅମଲାତନ୍ତ୍ର ଓ ରାଜନୈତିକ ନେତୃତ୍ୱ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ପାଇଁ ନିର୍ଦ୍ଦିଷ୍ଟ ଲୋକଙ୍କ ଉପରେ ଦାୟିତ୍ୱ ଦେବାକୁ ହେବ । ଏଥିସହିତ ମୁଖ୍ୟମନ୍ତ୍ରୀଙ୍କ ଘୋଷଣାଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ହେଲେ ସରକାର ଏବଂ ଅମଲାତନ୍ତ୍ର ବାହାରେ ଥିବା କେତେକ ଅଭିଜ୍ଞ ବ୍ୟକ୍ତିଙ୍କର ସହାୟତା ନେବାକୁ ହେବ । ଓଡ଼ିଆ ଭାଷାକୁ ଡିଜିଟାଲ୍ ଭାଷାରେ ପରିଣତ କାର୍ଯ୍ୟ ସଂପନ୍ନ ନ ହେଲେ ମୁଖ୍ୟମନ୍ତ୍ରୀଙ୍କ ଘୋଷଣା କାର୍ଯ୍ୟକାରୀ ହୋଇପାରିବ ନାହିଁ । ଅନ୍ୟ ରାଜ୍ୟମାନଙ୍କରେ ଭାଷା ଆଇନ୍‌କୁ କାର୍ଯ୍ୟକାରୀ କରିବା ପାଇଁ ଯେପରି ଭାଷା କମିଶନ ଗଠିତ ହୋଇଛି ଆମ ରାଜ୍ୟରେ ସେପରି କରିବାକୁ ପଡ଼ିବ ।

ଦୀର୍ଘ ବର୍ଷବର୍ଷ ଧରି ପ୍ରଶାସନ କ୍ଷେତ୍ରରେ ଇଂରାଜୀରେ ଲେଖିବାର ଅଭ୍ୟାସ, ଓଡ଼ିଆ ଭାଷା ପ୍ରତି ଅଫିସରମାନଙ୍କର ହେୟ ଜ୍ଞାନ ଭାଷା ଆଇନ୍‌କୁ କାର୍ଯ୍ୟକାରୀ କରିବାରେ ମୁଖ୍ୟ ପ୍ରତିବନ୍ଧକ ହେବ । ଜାନକୀବାବୁଙ୍କ ସମୟରେ ଅଣଓଡ଼ିଆ ଅଫିସରମାନଙ୍କର ବିରୋଧିତା ଥିଲେ ମଧ୍ୟ ସୁଧାଂଶୁ ମିଶ୍ର ମୁଖ୍ୟ ଶାସନ ସଚିବ ଥିଲେ ବୋଲି ଓଡ଼ିଆରେ ଓଡ଼ିଶାର ଶାସନ କାର୍ଯ୍ୟ କିଛି ପରିମାଣରେ ଆଗେଇ ଥିଲା ଏବଂ ଭବିଷ୍ୟତ ପାଇଁ ଏକ ଭିତ୍ତିଭୂମି ପ୍ରତିଷ୍ଠା ହୋଇଥିଲା । ଗତ ୨୬ ବର୍ଷ ମଧ୍ୟରେ ସେ ଭିତ୍ତିଭୂମି ନଷ୍ଟ ହୋଇଯାଇଛି । କେବଳ ଅଣଓଡ଼ିଆ ଅଫିସର ନୁହଁନ୍ତି ଓଡ଼ିଆ ଅଫିସର ଓ ମନ୍ତ୍ରୀମାନେ ଓଡ଼ିଆରେ କାର୍ଯ୍ୟ କରିବାକୁ ପଛଉଛନ୍ତି । ଓଡ଼ିଶାର ବିଦ୍ୟାଳୟଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଓଡ଼ିଆ ଶିକ୍ଷା, ଓଡ଼ିଆ ଭାଷା ପ୍ରତିଷ୍ଠାନ ଠାରୁ ଆରମ୍ଭ କରି ସଂସ୍କୃତି ବିଶ୍ୱବିଦ୍ୟାଳୟର ଅବସ୍ଥା ଅତ୍ୟନ୍ତ ଦୟନୀୟ । ବର୍ତ୍ତମାନର ମୁଖ୍ୟ ଶାସନ ସଚିବ ଏ ଦିଗରେ କେତେ ତତ୍ପରତା ଓ ଭାଷା ପ୍ରେମର ପରିଚୟ ଦେବେ ତାହା ଦେଖିବାର କଥା ।

ଏବେ ସବୁକିଛି ନିର୍ଭର କରୁଛି ମୁଖ୍ୟମନ୍ତ୍ରୀଙ୍କ ଦୃଢ ଇଚ୍ଛା ଶକ୍ତି ଉପରେ । ସେ କେତେ ପରିମାଣରେ ନିଜ ମନ୍ତ୍ରୀମଣ୍ଡଳର ସଦସ୍ୟ ଓ ଅମଲାତନ୍ତ୍ରକୁ ଏ ଦିଗରେ ସଂଚାଳିତ କରିପାରୁଛନ୍ତି ତାହାକୁ ଓଡ଼ିଶାର ଭାଷାପ୍ରେମୀ ଜନସାଧାରଣ ଲକ୍ଷ୍ୟ କରୁଛନ୍ତି । ତାଙ୍କ ଘୋଷଣା କାର୍ଯ୍ୟକାରୀ ହେଲେ ସେ ଓଡ଼ିଶା ଇତିହାସରେ ପୂଜା ପାଇବେ, ନ ହେଲେ ଅନ୍ୟମାନଙ୍କ ପରି ନିନ୍ଦିତ ହେବେ । କିନ୍ତୁ ଅନ୍ୟ ମୁଖ୍ୟମନ୍ତ୍ରୀମାନଙ୍କ ସମୟରେ ବର୍ତ୍ତମାନ ଭଳି ଏକ ଶକ୍ତିଶାଳୀ ଭାଷା ଆନ୍ଦୋଳନ ଗଢ଼ି ଉଠିନଥିଲା । ନିଜର

ମାତୃଭାଷାର ସୁରକ୍ଷା ଓ ମାତୃଭାଷାରେ ଶାସନ ପାଇଁ ଭାଷା ସୁରକ୍ଷା ସମ୍ମିଳନୀ ସାରା ରାଜ୍ୟରେ ଗତ ୪ ବର୍ଷ ମଧ୍ୟରେ ଏକ ଜାତୀୟ ଜାଗରଣ ସୃଷ୍ଟି କରିପାରିଛି । ଓଡ଼ିଆମାନଙ୍କ ମଧ୍ୟରେ ହଜି ଯାଇଥିବା ଜାତୀୟତାବୋଧ, ଭାଷା ପ୍ରୀତିକୁ ଜାଗ୍ରତ କରିବା ସହିତ ସରକାରଙ୍କୁ ତାଙ୍କ କର୍ତ୍ତବ୍ୟ ସମ୍ପର୍କରେ ସଚେତନ କରିବା ଓ ସେସବୁର ରୂପାୟନ ପାଇଁ ସହାୟତା ପ୍ରଦାନ କରିବା ଭାଷା ସୁରକ୍ଷା ସମ୍ମିଳନୀର ମୁଖ୍ୟ କାର୍ଯ୍ୟ ହେବ । ଇତିହାସ କହେ ଲୋକ ଜାଗ୍ରତ ରହିଲେ ସରକାରଙ୍କ ପକ୍ଷରେ ପ୍ରତିଶ୍ରୁତି ପାଳନ କରିବା ସହଜ ହୋଇଥାଏ । ମାତୃଭାଷାକୁ ରକ୍ଷା କରିବାକୁ ଯାଇ ଦିନେ ପୂର୍ବ ପାକିସ୍ତାନରେ ବିଦ୍ରୋହର ବହ୍ନି ଜଳିଥିଲା ଏବଂ ସେଇ ବହ୍ନି ଦାବାଗ୍ନିରେ ପରିଣତ ହୋଇ ବଙ୍ଗଳାଦେଶକୁ ଜନ୍ମ ଦେଇଥିଲା । ତେଣୁ ଭାଷା ଆନ୍ଦୋଳନକୁ ଅବ୍ୟାହତ ରଖି ଏହାକୁ ଆହୁରି ଶକ୍ତିଶାଳୀ କରିବା ପାଇଁ ଆବଶ୍ୟକୀୟ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ ।



# ଓଡ଼ିଶାକୁ ଯେମିତି ଜାଣେ

ସ୍କୁଲ୍‌ରେ ପଢ଼ିଲାବେଳେ ଆମ ଭୂଗୋଳ ଶିକ୍ଷକ ଆମକୁ ଓଡ଼ିଶାର ମାନଚିତ୍ର ଆଙ୍କିବାକୁ ଶିଖାଇଥିଲେ । ତା' ପୂର୍ବରୁ ଜାଣିଥିଲି ଆମ ରାଜ୍ୟର ନାମ ଓଡ଼ିଶା ଏବଂ ମୁଁ ଯେଉଁ ଭାଷାରେ କଥା ହୁଏ ସେ ଭାଷାର ନାମ ଓଡ଼ିଆ । ଆମର ମାତୃଭାଷା ଓଡ଼ିଆ ହୋଇଥିବାରୁ ଆମେ ଓଡ଼ିଆ ବୋଲି ଜାଣିଲି । ଓଡ଼ିଶାର ଇତିହାସ ମଧ୍ୟ ଜାଣିଲି । ଅନ୍ୟାନ୍ୟ ଜାତିମାନଙ୍କ ପରି ଆମ ଓଡ଼ିଆ ଜାତି ମଧ୍ୟ ବହୁ ଉତ୍‌ଥାନ ପତନ ଦେଇ ଗତି କରିଛି । ବିଭିନ୍ନ ସମୟରେ ଆମ ଓଡ଼ିଆ ଭାଷା ଭୂଖଣ୍ଡ ଭିନ୍ନ ଭିନ୍ନ ନାମରେ ପରିଚିତ ହୋଇଛି । ଆମେ କେତେବେଳେ ଅନ୍ୟ ଭାଷାଭାଷୀ ରାଜ୍ୟକୁ ଜୟ କରି ଆମ ସୀମାକୁ ବଢ଼ାଇ ଦେଇଛୁ ତ ଅନ୍ୟମାନେ ଆମ ରାଜ୍ୟର ବିଭିନ୍ନ ଅଂଶକୁ ଜୟ କରି ନେଇଛନ୍ତି । ଅନ୍ୟର ଅଧୀନରେ ଥିଲାବେଳେ ଆମର ଅର୍ଥନୈତିକ ଅଭିବୃଦ୍ଧି, ବ୍ୟବସାୟ ବାଣିଜ୍ୟ ବାଧାପ୍ରାପ୍ତ ହୋଇଛି । ଆମ ଭାଷା ସାହିତ୍ୟ ସଂସ୍କୃତିର ବିକାଶ ଶିଥିଳ ହୋଇପଡ଼ିଛି, ବେଳେବେଳେ ସଙ୍କଟ ଦେଖା ଦେଇଛି ।

ଦୀର୍ଘଦିନର ଅବସର ପରେ ଊନବିଂଶ ଶତାବ୍ଦୀର ଶେଷ ଭାଗରେ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଓଡ଼ିଆମାନଙ୍କ ମଧ୍ୟରେ ନବଜାଗରଣ ସୃଷ୍ଟି ହେଲା ।

ମଧୁବାବୁ, ଗୋପବନ୍ଧୁ, ଫକୀରମୋହନଙ୍କ ଲେଖା ପଢ଼ି ଆମ ମନରେ ଓଡ଼ିଆ ଜାତୀୟତାବୋଧ ଜାଗ୍ରତ ହୋଇଥିଲା । ୧୯୩୬ରେ ଭାଷା ଭିତ୍ତିରେ ଓଡ଼ିଆ ପ୍ରଦେଶ ଗଠିତ ହେଲା । ଓଡ଼ିଆମାନେ ଆଶା କରିଥିଲେ ସ୍ୱାଧୀନତା ପରେ ପୂର୍ଣ୍ଣାଙ୍ଗ ଓଡ଼ିଆ ହେବ । ସ୍ୱାଧୀନତା ଆସିଲା କିନ୍ତୁ ପୂର୍ଣ୍ଣାଙ୍ଗ ଓଡ଼ିଆ ହେଲା ନାହିଁ । କେବଳ ରାଜାରାଜୁଡ଼ାଙ୍କ ଦ୍ୱାରା ଶାସିତ ଗଡ଼ଜାତ ଅଞ୍ଚଳଗୁଡ଼ିକ ମିଶିଲା । ଷଢ଼େଇକଳା, ଖରସୁଆଁ ଚାଲିଗଲା । ଏହି ଅବିଚାର ବିରୋଧରେ ଓଡ଼ିଶାବାସୀଙ୍କ କ୍ଷୋଭ ସ୍ୱତଃସ୍ଫୂର୍ତ୍ତ ଜନ ଆନ୍ଦୋଳନରେ ପରିଣତ ହୋଇଥିଲା । ଏହି ଆନ୍ଦୋଳନ ଓଡ଼ିଆ ଜାତୀୟତାବୋଧକୁ ଆହୁରି ଶାଣିତ କରିଥିଲା ।

ସ୍ୱାଧୀନତା ପରେ ବହୁ ଦଳୀୟ ରାଜନୀତିରେ ଓଡ଼ିଶାର ବିକାଶ ଅପେକ୍ଷା କ୍ଷମତା ଦଖଲଟା ନେତାମାନଙ୍କର ମୁଖ୍ୟ ଲକ୍ଷ୍ୟ ହୋଇପଡ଼ିଲା । ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଅସୀମ ତ୍ୟାଗ ସ୍ୱୀକାର କରିଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି କ୍ଷମତା ଲଢ଼େଇର ଶିକାର ହେଲେ । ରାଜ୍ୟ ନେତାମାନଙ୍କ ମଧ୍ୟରେ ଓଡ଼ିଶାର କୃଷି, ଶିଳ୍ପ, ଶିକ୍ଷା ସଂସ୍କୃତିର ବିକାଶ ପାଇଁ ସମନ୍ୱୟାତ୍ମକ ଦୃଷ୍ଟିକୋଣର ଅଭାବ, ରାଜନୈତିକ ଅସ୍ଥିରତା ଓଡ଼ିଶାକୁ ପଛେଇ ଦେଲା । ଭାରତର ଅନ୍ୟ ରାଜ୍ୟମାନେ ଏସବୁ କ୍ଷେତ୍ରରେ ଆଗେଇ ଗଲାବେଳେ ଆମେ ପଛରେ ରହିଗଲେ । ଭାରତର ସଂଘୀୟ ରାଜନୀତି କ୍ଷେତ୍ରରେ ଆମମାନଙ୍କ ମଧ୍ୟରେ ଗୋଡ଼ଟଣା ମନୋଭାବ ହେତୁ ଆମେ ଦିଲ୍ଲୀ ରାଜନୀତି ଉପରେ ପ୍ରଭାବ ପକାଇ ପାରିଲେ ନାହିଁ ।

ଓଡ଼ିଶାର ବିକାଶ ନିର୍ଭର କରୁଛି ଉଭୟ କୃଷି ଆଉ ଶିଳ୍ପର ବିକାଶ ଉପରେ । କୃଷିର ବିକାଶ ଯେଉଁସବୁ ପଦକ୍ଷେପ ନେବା କଥା, ବିଶେଷକରି ଭୂସଂସ୍କାର ଏବଂ ଜଳସେଚନର ବ୍ୟବସ୍ଥାର ଅଭାବ ଓଡ଼ିଶାର କୃଷି ବିକାଶ କ୍ଷେତ୍ରରେ ଅନ୍ତରାୟ ହେଲା । ଫଳରେ କୃଷି କ୍ଷେତ୍ରରେ ଓଡ଼ିଶାର ଲୋକେ କ୍ରମଶଃ ବେକାର ହେଲେ । ଶିଳ୍ପର ବିକାଶ ପାଇଁ ଓଡ଼ିଶାର ଅମାପ ଖଣିଜ ସମ୍ପଦ, ବଣ୍ୟ ସଂପଦ ଥିଲେ ମଧ୍ୟ ଆମେ ତା'ର ସଦୁପଯୋଗ କରିପାରିଲୁ ନାହିଁ । ଯେଉଁସବୁ ଶିଳ୍ପପତିମାନେ ଓଡ଼ିଶାରେ ପୁଞ୍ଜିନିବେଶ କରିବାକୁ ଆସିଲେ ସେମାନଙ୍କ ଦୃଷ୍ଟି ରହିଲା ଆମ ଖଣିଜ ସଂପଦ ଉପରେ । ସେମାନେ ଖଣି ସଂପଦ ଅଞ୍ଚଳର ଦାରିଦ୍ର୍ୟରେ ସଢୁଥିବା ଅଶିକ୍ଷିତ ଆଦିବାସୀମାନଙ୍କ ଥଇଥାନ ସ୍ୱାର୍ଥ ପ୍ରତି ଧ୍ୟାନ ଦେଲେ ନାହିଁ । ଖଣି ମାଲିକମାନେ ଖଣିଜ ସମ୍ପଦକୁ ଲୁଟ୍ କରି ହଜାର ହଜାର କୋଟି ଟଙ୍କା ଲୁଟ୍ କଲେ । ସେମାନଙ୍କୁ ରୋକିବା ପାଇଁ କେହି ରହିଲେ ନାହିଁ । ଯେଉଁମାନେ ରୋକିବା କଥା ସେମାନେ ନାନା କାରଣରୁ ଆଖି ବୁଜିଦେଲେ । ଅନ୍ୟ ଦିଗରେ ବଣ୍ୟସମ୍ପଦକୁ ମଧ୍ୟ ଲୁଟ୍

କରାଗଲା । କୃଷି, ବଣଜଙ୍ଗଲ ଉପରେ ନିର୍ଭର କରୁଥିବା ଲୋକେ ବେକାର ହୋଇ ଦରିଦ୍ର ହେଲେ । ଶିଳ୍ପର ବିକାଶ ହୋଇଥିଲେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ନିଯୁକ୍ତି ଯୋଗାଇ ଦିଆଯାଇ ପାରିଥାନ୍ତା । ଫଳରେ ହତାଶ ହୋଇ ଲକ୍ଷ ଲକ୍ଷ ଲୋକ ପିଲାଛୁଆ ନେଇ ଦାଦନ ଖଟିବା ପାଇଁ ଅନ୍ୟ ପ୍ରଦେଶକୁ ଧାଇଁଲେ ।

ଅର୍ଥନୈତିକ ବିକାଶର ଅଭାବ ହେତୁ ଶିକ୍ଷା, ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଆଶାନୁରୂପ ଅଗ୍ରଗତି ହୋଇପାରି ନାହିଁ । ପ୍ରାଥମିକ ଶିକ୍ଷାଠାରୁ ଆରମ୍ଭ କରି ଉଚ୍ଚ ଶିକ୍ଷା କ୍ଷେତ୍ରରେ ଉପଯୁକ୍ତ ଶିକ୍ଷକ ଓ ଅଧ୍ୟାପକମାନଙ୍କର ଅଭାବ । ତତ୍‌ସହିତ ଆବଶ୍ୟକୀୟ ଭିତ୍ତିଭୂମି ନ ଥିବାରୁ ଓଡ଼ିଶାରେ ମାନବ ସମ୍ବଳର ବିକାଶ ଆଶାନୁରୂପ ହୋଇପାରୁନି । ଆଇଟି ଏବଂ ଇଂଜିନିୟରିଂ କ୍ଷେତ୍ରରେ ଯେଉଁସବୁ ପିଲା ଉତ୍ତୀର୍ଣ୍ଣ ହେଉଛନ୍ତି ସେମାନଙ୍କ ପାଇଁ ଆମ ରାଜ୍ୟରେ କର୍ମ ନିଯୁକ୍ତିର ସୁଯୋଗ ନାହିଁ ।

୧୯୩୬ରେ ଭାଷା ଭିତ୍ତିରେ ଏ ରାଜ୍ୟ ଗଠିତ ହୋଇଥିଲା । ଭାରତର ଅନ୍ୟ ସମସ୍ତ ରାଜ୍ୟରେ ସେମାନଙ୍କ ମାତୃଭାଷାରେ ପ୍ରଶାସନ, ବିଚାରାଳୟ, ବ୍ୟବସାୟ ବାଣିଜ୍ୟର କାର୍ଯ୍ୟ ଚାଲିଥିଲାବେଳେ ଆମ ରାଜ୍ୟରେ ହୋଇପାରିଲା ନାହିଁ । ଆମ ମାତୃଭାଷାରେ ସରକାରୀ ସ୍କୁଲ୍ କଲେଜମାନଙ୍କରେ ଦିଆଯାଉଥିବା ଓଡ଼ିଆ ଭାଷା ସାହିତ୍ୟର ଶିକ୍ଷା ଅତ୍ୟନ୍ତ ନିମ୍ନମାନର । ବ୍ୟାପକ ବ୍ୟବହାର ଅଭାବରୁ ଓଡ଼ିଆ ଭାଷା ସାହିତ୍ୟର ବିକାଶ ସଂକୁଚିତ ହେବାରେ ଲାଗିଛି । ଉପାନ୍ତ ପିଲାମାନଙ୍କର ଓଡ଼ିଆ ଭାଷାର ପ୍ରଚଳନ କମି ଯାଉଛି । ଶାସନରେ ରହୁଥିବା ଲୋକେ ଇଂରେଜୀ ଭାଷାର ମୋହରେ ଆଛନ୍ନ । ଓଡ଼ିଶାର ବୁଦ୍ଧିଜୀବୀମାନେ ନିଜ ଶ୍ରେଣୀର ସଂକୀର୍ଣ୍ଣ ସ୍ୱାର୍ଥ ଦୃଷ୍ଟିରୁ ଓଡ଼ିଆ ଭାଷାର ପାରବାରିକ ତଥା ପ୍ରଶାସନିକ ସ୍ତରରେ ବ୍ୟବହାର ପାଇଁ ମନ ଦେଉନାହାନ୍ତି । ଶିକ୍ଷିତ ଲୋକଙ୍କର ଓଡ଼ିଆ ପତ୍ରପତ୍ରିକା, ପୁସ୍ତକ ପଢ଼ିବାର ଆଗ୍ରହ କମୁଛି । ୧୯୫୪ ମସିହାରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଆ ଭାଷାକୁ ସରକାରୀ ଭାଷାରେ ପରିଣତ କରିବା ପାଇଁ ଆଇନ୍ ପାଶ୍ କରିଥିଲେ ମଧ୍ୟ ଏପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ହେଲା ନାହିଁ । ଏହାଠାରୁ ଅପମାନର କଥା କ'ଣ ହୋଇପାରେ । ସ୍ୱାଧୀନତାର ୬୫ ବର୍ଷ ପରେ ଓଡ଼ିଆ ଏକ ଦିଗହରା ଦରିଦ୍ର ଜାତି ହୋଇ ରହିଯାଇଛି ବୋଲି ମୋର ମନେହେଉଛି ।



# ଭାଷା ଭାବନା



## ବୈଷ୍ଣବ ଚରଣ ପରିଡ଼ା

୧୫ ଫେବୃୟାରୀ ୧୯୪୧ - ୨୨ ନଭେମ୍ବର ୨୦୧୮

ବିଶିଷ୍ଟ ରାଜନୀତିଜ୍ଞ, ସୁସାହିତ୍ୟିକ ଓ ଭାଷା ସୁରକ୍ଷା ସମ୍ମିଳନୀର କର୍ଣ୍ଣଧାର ବୈଷ୍ଣବ ଚରଣ ପରିଡ଼ା ଥିଲେ ଜଣେ ବହୁମୁଖୀ ବ୍ୟକ୍ତିତ୍ୱର ଅଧିକାରୀ । ତାଙ୍କ ଜୀବନ ଥିଲା ଉଭୟ ସେବା ଓ ସାହିତ୍ୟ ପ୍ରତି ସମର୍ପିତ । ସମାଜବାଦୀ ଚିନ୍ତା ଓ ଚେତନାରେ ସେ ବିଶ୍ୱାସ କରୁଥିଲେ ଏବଂ ସେହି ଦର୍ଶନ ପ୍ରତି ସେ ଥିଲେ ପ୍ରତିବଦ୍ଧ । ସାଧାରଣ ଲୋକଙ୍କ ସ୍ୱର ହେବା ସହ ପ୍ରତ୍ୟକ୍ଷ ରାଜନୀତି ସହିତ ସେ ଥିଲେ ଓତପ୍ରୋତଃ ଜଡ଼ିତ । ସଂଘର୍ଷମୟ ରାଜନୈତିକ ଜୀବନ ଥିଲା ତାଙ୍କର । ଶେଷରେ ସେ ରାଜ୍ୟସଭାର ମାନ୍ୟବର ସଦସ୍ୟ ପଦ ମଣ୍ଡନ କରିଥିଲେ । ନିଜର କାର୍ଯ୍ୟକାଳ ମଧ୍ୟରେ ଜଣେ ଦକ୍ଷ ସାଂସଦ ଭାବରେ ସେ ନିଜକୁ ପ୍ରତିପାଦିତ କରିପାରିଥିଲେ । ସେହିପରି ଜଣେ ସୁସାହିତ୍ୟିକ ଭାବେ ମଧ୍ୟ ଶ୍ରୀ ପରିଡ଼ାଙ୍କର ଖୁବ୍ ସୁନାମ ଥିଲା । ଜଣେ ଉଚ୍ଚକୋଟୀର ଅନୁବାଦକ ଭାବେ ସେ ଋଷ ଭାଷାର ବହୁ କାଳଜୟୀ ରଚନାକୁ ଓଡ଼ିଆ ଭାଷାରେ ଏବଂ ବହୁ ଲୋକପ୍ରିୟ ଓଡ଼ିଆ ସାହିତ୍ୟକୁ ଋଷୀୟ ଭାଷାରେ ଅନୁବାଦ କରିଛନ୍ତି । ଜଣେ ମୌଳିକ ରଚୟିତା ଭାବେ ମଧ୍ୟ ସେ ଅନେକଗୁଡ଼ିଏ ଗଳ୍ପ, କବିତା, ନିବନ୍ଧ ଆଦି ରଚନା କରିଛନ୍ତି । ତାଙ୍କ ଜୀବନର ସବୁଠୁ ଉଲ୍ଲେଖନୀୟ ଦିଗ ହେଉଛି ଓଡ଼ିଆ ଭାଷାର ସୁରକ୍ଷା ନିମନ୍ତେ ଏକ ଜନଆନ୍ଦୋଳନ ଗଢ଼ି ତୋଳିବା । ଏଥିପାଇଁ ସେ 'ଭାଷା ସୁରକ୍ଷା ସମ୍ମିଳନୀ' ନାମରେ ଏକ ସଂଗଠନ ପ୍ରତିଷ୍ଠା କରି ଓଡ଼ିଆ ଭାଷାର ସୁରକ୍ଷା ନିମନ୍ତେ ରାଜ୍ୟବ୍ୟାପୀ କାର୍ଯ୍ୟକ୍ରମ ଜାରି ରଖିଥିଲେ । ଓଡ଼ିଆ ଭାଷା ସରକାରୀ କାର୍ଯ୍ୟରେ ପୂର୍ଣ୍ଣ ପ୍ରଯୁକ୍ତ ହେଉ, ସରକାରୀ କାର୍ଯ୍ୟରେ ଓଡ଼ିଆ ଭାଷା ବ୍ୟବହାର କରୁନଥିବା କର୍ମଚାରୀଙ୍କ ପ୍ରତି ଦଣ୍ଡବିଧାନ ହେଉ, ଏଥିପାଇଁ ଗୋଟିଏ ଭାଷା କମିଶନ ଗଠନ କରାଯାଉ ବୋଲି ସେ ବାରମ୍ବାର ଦାବି କରିଆସୁଥିଲେ । ରାଜ୍ୟବ୍ୟାପୀ ସଭା, ସମିତି, ପ୍ରତିବାଦ କରି ସଚେତନତା ସୃଷ୍ଟି କରୁଥିଲେ । ଭାଷା ସୁରକ୍ଷା ଆନ୍ଦୋଳନକୁ ଅଧିକ ଦୃଢ ଓ ପ୍ରଭାବଶାଳୀ କରିବା ପାଇଁ ସେ ବିଭିନ୍ନ ପତ୍ରପତ୍ରିକାରେ ନିୟମିତ ଲେଖାଲେଖି କରୁଥିଲେ । ଭାଷା ସମ୍ପର୍କିତ ସେହିସବୁ ଲେଖାର ଏକ ସଂକଳିତ ରୂପ 'ଭାଷା ଭାବନା' ।